# ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିବା ସାରସ୍ୱତ ସାଧକଙ୍କ ନାମ ତାଲିକା

## ୧୯୬୪ ମସିହା

୧ - ପଣ୍ଡିତ ନୀଳକଣ୍ଠ ଦାସ
୨ - ଡଃ ଆର୍ତ୍ତବଲ୍ଲଭ ମହାନ୍ତି
୩ - ପଣ୍ଡିତ ବିନାୟକ ମିଶ୍ର
୪ - ପଣ୍ଡିତ କୁଳମଣି ଦାସ
୫ - ଡଃ ଲକ୍ଷ୍ମୀନାରାୟଣ ସାହୁ
୬ - ଡଃ ଭିକାରୀ ଚରଣ ପଟ୍ଟନାୟକ
୭ - ବିପିନ ବିହାରୀ ରାୟ
୮ - ବାଳକୃଷ୍ଣ ପଟ୍ଟନାୟକ
୯ - ଭିକାରୀ ଚରଣ ଦାସ
୧୦ - ଅଶ୍ୱିନୀ କୁମାର ଘୋଷ
୧୧ - ସ୍ୱପ୍ନେଶ୍ୱର ଦାସ
୧୨ - ଡଃ ପ୍ରାଣକୃଷ୍ଣ ପରିଡ଼ା
୧୩ - କୃଷ୍ଣ ପ୍ରସାଦ ବସୁ

## ୧୯୬୫ ମସିହା

୧୪ - ଆଚାର୍ଯ୍ୟ ହରିହର ଦାସ
୧୫ - ପଣ୍ଡିତ ବାସୁଦେବ ମିଶ୍ର
୧୬ - ପଣ୍ଡିତ ଦାମୋଦର ଶାସ୍ତ୍ରୀ
୧୭ - ପଣ୍ଡିତ ଲୋକନାଥ ଶାସ୍ତ୍ରୀ
୧୮ - ପ୍ରଫେସର ରତ୍ନାକର ପତି
୧୯ - ଡଃ କରୁଣାକର କର
୨୦ - ପଦ୍ମଶ୍ରୀ ପରାମାନନ୍ଦ ଆଚାର୍ଯ୍ୟ
୨୧ - ପଣ୍ଡିତ ବାସୁଦେବ ମହାପାତ୍ର
୨୨ - ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର
୨୩ - ପଣ୍ଡିତ ଗଣେଶ୍ୱର ରଥ
୨୪ - ପଣ୍ଡିତ ଆନନ୍ଦ ମିଶ୍ର
୨୫ - ବ୍ରଜମୋହନ ପଣ୍ଡା

## ୧୯୬୭ ମସିହା

୨୬ - ପଦ୍ମଭୂଷଣ ରାଧାନାଥ ରଥ
୨୭ - କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ
୨୮ - ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ
୨୯ - ଅନନ୍ତ ପଦ୍ମନାଭ ପଟ୍ଟନାୟକ
୩୦ - କପିଳେଶ୍ୱର ଦାଶ
୩୧ - ଡଃ ନୀଳାଦ୍ରୀ ଦତ୍ତ
୩୨ - ସତ୍ୟନାରାୟଣ ରାଜଗୁରୁ
୩୩ - ଶ୍ରୀମତୀ ସରଳା ଦେବୀ
୩୪ - ଉଦୟନାଥ ଷଡ଼ଙ୍ଗୀ
୩୫ - ହରିହର ମିଶ୍ର
୩୬ - ସୀତାଦେବୀ ଖାଡ଼ଙ୍ଗା
୩୮ - କନକଲତା ଦେବୀ
୩୯ - ବାଇକୋଳି ଜ୍ୟୋତିଷ ବିଶାରଦ
୪୦ - ଭରତ ଚନ୍ଦ୍ର ନାୟକ
୪୧ - ସୁଧାକର ପଟ୍ଟନାୟକ
୪୨ - ହରିଶ୍ଚନ୍ଦ୍ର ବଡ଼ାଳ
୨୩ - ବୀରକିଶୋର ଦାସ
୪୪ - ଡଃ ରାଧାଚରଣ ପଣ୍ଡା
୪୫ - ଜଗବନ୍ଧୁ ମହାପାତ୍ର
୪୬ - ରାଜକିଶୋର ପଟ୍ଟନାୟକ
୪୭ - ଦୀନବନ୍ଧୁ ରଥ
୪୮ - ଶରତଚନ୍ଦ୍ର ଭଞ୍ଜଦେବ
୪୯ - ଉପେନ୍ଦ୍ର ପ୍ରସାଦ ମହାନ୍ତି
୫୦ - ହରନାରାୟଣ ସିଂହ
୫୧ - ବିଷ୍ଣୁ ପ୍ରସାଦ ଦାସ
୫୨ - ଶିବ ପ୍ରସାଦ ଦାସ

୫୩ - ଚନ୍ଦ୍ରଶେଖର ମିଶ୍ର
୫୪ - ଉପେନ୍ଦ୍ର କିଶୋର ଦାସ
୫୫ - ଅନନ୍ତ ତ୍ରିପାଠୀ ଶର୍ମା
୫୬ - ବୈରାଗୀ ମିଶ୍ର

## ୧୯୭୦ ମସିହା

୫୭ - କାଳିନ୍ଦୀଚରଣ ପାଣିଗ୍ରାହୀ
୫୮ - ଡଃ ମାୟାଧର ମାନସିଂହ
୫୯ - ଗୌରଚନ୍ଦ୍ର ରାଉତ
୬୦ - ଚୂଡ଼ାମଣି ନାୟକ
୬୧ - ରାଘବମିଶ୍ର
୬୨ - ଶ୍ରୀମତୀ ନିର୍ମଳା ଦେବୀ
୬୩ - ରାମଚନ୍ଦ୍ର ମହାପାତ୍ର
୬୪ - କବିରାଜ ବ୍ରଜବନ୍ଧୁ ତ୍ରିପାଠୀ
୬୫ - ଅନ୍ନଦା ଶଙ୍କର ରାୟ
୬୬ - ଦାମୋଦର ମିଶ୍ର
୬୭ - ପ୍ରମୋଦଚନ୍ଦ୍ର ଦେବ
୬୮ - ଚିନ୍ତାମଣି ମିଶ୍ର
୬୯ - ବାସୁଦେବ ମହାପାତ୍ର
୭୦ - ଭାବଗ୍ରାହୀ ପତି
୭୧ - ଚିନ୍ତାମଣି ଦାସ
୭୨ - ରାମପ୍ରସାଦ ସିଂହ
୭୩ - ରାଜକିଶୋର କାନୁନ୍‌ଗୋ

## ୧୯୭୧ - ୭୨

୭୪ - ଭଗବାନ୍ ପତି
୭୫ - କାର୍ତ୍ତିକ କୁମାର ଘୋଷ
୭୬ - ଉପେନ୍ଦ୍ର ତ୍ରିପାଠୀ
୭୭ - ଡଃ କୁଞ୍ଜ ବିହାରୀ ତ୍ରିପାଠୀ
୭୮ - ପଣ୍ଡିତ ଜଗନ୍ନାଥ ରଥ
୭୯ - ହରିହର ମହାପାତ୍ର
୮୦ - କିଶୋରୀ ମୋହନ ଦ୍ୱିବେଦୀ
୮୧ - ହର ପ୍ରିୟା ଦେବୀ
୮୨ - ଗୋଦାବରୀ ଦେବୀ
୮୩ - ଦେବଦୂତୀ ଦେଈ
୮୪ - କୃଷ୍ଣଚନ୍ଦ୍ର କର
୮୫ - ସତ୍ୟନାରାୟଣ ବହିଦାର
୮୬ - ଭଗବାନ ମେହେର
୮୭ - ଅନନ୍ତ ପ୍ରସାଦ ପଣ୍ଡା
୮୮ - କାଳିଆ ପାଣିଗ୍ରାହୀ
୮୯ - ଗୋପାଳ ଚନ୍ଦ୍ର ପଟ୍ଟନାୟକ
୯୦ - ବାଳକୃଷ୍ଣ ପାତ୍ର
୯୧ - ଘନଶ୍ୟାମ ହୋତା
୯୨ - ଦିବ୍ୟରାଜ ସିଂହ
୯୩ - ପର୍ଶୁରାମ ମିଶ୍ର
୯୪ - ରଘୁନାଥ ପାଣିଗ୍ରାହୀ

## ୧୯୭୩ ମସିହା

୯୫ - ଅଦ୍ୱୈତ ଚରଣ ମହାନ୍ତି
୯୬ - ବିଶ୍ୱନାଥ ବାବା
୯୭ - ହରିଚରଣ ଗିରି
୯୮ - ନୀଳକଣ୍ଠ ରଥ
୯୯ - ମନମୋହିନୀ ଦେବୀ
୧୦୦ - ରାମାନାଥ ମିଶ୍ର
୧୦୧ - ମାଧବଚନ୍ଦ୍ର ମିଶ୍ର
୧୦୨ - ରାଧାମୋହନ ଗଡ଼ନାୟକ
୧୦୩ - କାହ୍ନୁଚରଣ ମହାନ୍ତି
୧୦୪ - ସତ୍ୟାନନ୍ଦ ବେହୁରା
୧୦୫ - କମଳା କାନ୍ତ ଦାସ
୧୦୬ - କୃଷ୍ଣଚନ୍ଦ୍ର ତ୍ରିପାଠୀ
୧୦୭ - ଖଗେଶ୍ୱର ସେଠ

## ୧୯୭୪ ମସିହା

୧୦୮ - ଶଶିଭୂଷଣ ମିଶ୍ର
୧୦୯ - ଗୋଲକ ଚନ୍ଦ୍ର ପ୍ରଧାନ
୧୧୦ - ରାମଚନ୍ଦ୍ର ସ୍ୱାଇଁ
୧୧୧ - ରମାରଞ୍ଜନ ମହାନ୍ତି
୧୧୨ - ଡଃ ସଦାଶିବ ମିଶ୍ର
୧୧୩ - ଦେବେନ୍ଦ୍ର କୁମାର ସିଂହ
୧୧୪ - ଲୋକନାଥ ମିଶ୍ର
୧୧୫ - ଅନନ୍ତ ରଥ
୧୧୬ - ପ୍ରହ୍ଲାଦ ପ୍ରଧାନ
୧୧୭ - ନିତ୍ୟାନନ୍ଦ ମହାପାତ୍ର
୧୧୮ - କେଦାର ନାଥ ମହାପାତ୍ର
୧୧୯ - ବାବାକିଶୋର ଦାସ
୧୨୦ - ଅନିରୁଦ୍ଧ ଦାଶ
୧୨୧ - ଜୟାକୃଷ୍ଣ ମିଶ୍ର
୧୨୨ - ରମେଶଚନ୍ଦ୍ର ପାଣିଗ୍ରାହୀ

## ୧୯୭୫ ମସିହା

୧୨୩ - ଜେ.ଭି.ବୋଲ୍‌ଟନ
୧୨୪ - ଶଙ୍କର ପ୍ରସାଦ ଯାଢ଼ୀ
୧୨୫ - ନିତ୍ୟାନନ୍ଦ ବହିଦାର
୧୨୬ - ରାମକୃଷ୍ଣ ନନ୍ଦ
୧୨୭ - ଅର୍ଜୁନ ହୋତା
୧୨୮ - ଡଃ କୃଷ୍ଣ ଚନ୍ଦ୍ରପାଣିଗ୍ରାହୀ
୧୨୯ - ଡଃ ବଂଶୀଧର ସାମନ୍ତରାୟ
୧୩୦ - ଡଃ କୁଞ୍ଜବିହାରୀ ଦାଶ
୧୩୧ - ରଘୁନାଥ ପଣ୍ଡା
୧୩୨ - ସୁନ୍ଦର ମଣି ପଟ୍ଟନାୟକ
୧୩୩ - ମହେଶ୍ୱର ନାୟକ
୧୩୪ - ସତ୍ୟନାରାୟଣ ପଣ୍ଡା

## ୧୯୭୬ ମସିହା

୧୩୫ - ସତ୍ୟବାଦୀ ତ୍ରିପାଠୀ
୧୩୬ - ପିତାମ୍ବର ପଣ୍ଡା
୧୩୭ - ଦାଶରଥି ପଟ୍ଟନାୟକ
୧୩୮ - ପ୍ରାଣନାଥ ମହାନ୍ତି
୧୩୯ - ଗୋକୁଳଚନ୍ଦ୍ର ଶତପଥୀ
୧୪୦ - ସୁରେନ୍ଦ୍ର ନାଥ ଦ୍ୱିବେଦୀ
୧୪୧ - ହେମଲତା ମାନସିଂହ
୧୪୨ - ଜ୍ଞାନୀନ୍ଦ୍ର ବର୍ମା
୧୪୩ - ରାମଚନ୍ଦ୍ର ମିଶ୍ର (ଫତୁରାନନ୍ଦ)

## ୧୯୭୭ ମସିହା

୧୪୪ - ଭ୍ରମରବର ରାୟ
୧୪୫ - ଦୟାନିଧି ମିଶ୍ର
୧୪୬ - ରତ୍ନାକର କର
୧୪୭ - ନାରାୟଣ ମହାପାତ୍ର
୧୪୮ - ସୋମେଶ୍ୱର ବେହେରା
୧୪୯ - ଲକ୍ଷ୍ମୀଧର ନାୟକ
୧୫୦ - ଗୋପୀନାଥ ମହାନ୍ତି
୧୫୧ - ରାଜକିଶୋର ରାୟ
୧୫୨ - ବସନ୍ତ କୁମାର ଶତପଥୀ

## ୧୯୭୮ ମସିହା

୧୫୩ - ଶ୍ରୀଦର ଦାସ
୧୫୪ - ଅଭିମନ୍ୟୁ ଦେବତା
୧୫୫ - ରଘୁନାଥ ପ୍ରସାଦ ବହିଦାର
୧୫୬ - ରଘୁନାଥ ମୁର୍ମୁ
୧୫୭ - ସୂର୍ଯ୍ୟନାରାୟଣ ଦାଶ
୧୫୮ - ଘନଶ୍ୟାମ ମହାନ୍ତି
୧୫୯ - ବିଦୂଷୀ ଲବଙ୍ଗଲତା ଦେବୀ
୧୬୦ - ଶଶିଧର ପଟ୍ଟନାୟକ

୧୬୧ - ପର୍ଶୁରାମ ମୁଣ୍ଡ
୧୬୨ - ନଟବର ସାମନ୍ତରାୟ

### ୧୯୭୯ ମସିହା

୧୬୩ - ଅଲେଖ ପ୍ରସାଦ ଦାସ
୧୬୪ - ଗୋକୁଳାନନ୍ଦ ଅଗସ୍ତି ଶର୍ମା
୧୬୫ - ରାମନାଥ ମିଶ୍ର
୧୬୬ - କମଳଲୋଚନ ଷଡ଼ଙ୍ଗୀ
୧୬୭ - ଡଃ ଶ୍ରଦ୍ଧାକର ସୂପକାର
୧୬୮ - ମଙ୍ଗେଇ ଗୋମାଙ୍ଗ
୧୬୯ - ଡଃ ଗୌରୀ କୁମାର ବ୍ରହ୍ମା
୧୭୦ - ଅନୂପ ସିଂହ ଦେବ
୧୭୧ - ବିନୋଦ ଚନ୍ଦ୍ର ନାୟକ
୧୭୨ - ତ୍ରିବେଣୀ ମହମୋଦନ

### ୧୯୮୦ ମସିହା

୧୭୩ -ବୈତଣ୍ଡିକ ରାମକୃଷ୍ଣ ଦାସ
୧୭୪ - ବିମଳା ଦେବୀ
୧୭୫ - ରାଜେନ୍ଦ୍ର ବର୍ମା
୧୭୬ - ଉପେନ୍ଦ୍ର ମିଶ୍ର
୧୭୭ - ସତ୍ୟନାରାୟଣ ପଟ୍ଟନାୟକ
୧୭୮ - ରାମଚନ୍ଦ୍ର ମିଶ୍ର
୧୭୯ - ଶ୍ରୀହର୍ଷ ମିଶ୍ର
୧୮୦ - ଡଃ ସାବିତ୍ରୀ ରାଉତ
୧୮୧ - ଦୁର୍ଗାବତୀ ତ୍ରିପାଠୀ
୧୮୨ - ଲକ୍ଷ୍ମୀନାରାୟଣ ମହାନ୍ତି

### ୧୯୮୧ ମସିହା

୧୮୩ - ବନମାଳି ସାହିତ୍ୟ ଭୂଷଣ
୧୮୪ - ବିଶ୍ୱାନାଥ ପଟ୍ଟଯୋଷୀ
୧୮୫ - ଦତ୍ତ ବିହାରୀ ଦାଶ
୧୮୬ - ମହେଶ ଚନ୍ଦ୍ର ମହାପାତ୍ର
୧୮୭ - ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା
୧୮୮ - ଭୁବନେଶ୍ୱପର ମହାପାତ୍ର

### ୧୯୮୨ ମସିହା

୧୮୯ - ଭୁବନଶ୍ୱର ବେହେରା
୧୯୦ - କାହ୍ନୁଚରଣ ମିଶ୍ର
୧୯୧ - ବେଣୀମାଧବ ପାଢ଼ୀ
୧୯୨ - ବୁଭୂତି ଭୂଷଣ ତ୍ରିପାଠୀ
୧୯୩ - ନୀଳମାଧବ ପାଣିଗ୍ରାହୀ
୧୯୪ - ରଘୁନାଥ ମିଶ୍ର
୧୯୫ - ବ୍ରଜକିଶୋର ଧଳ

### ୧୯୮୩ ମସିହା

୧୯୬ - ନନ୍ଦକିଶୋର ଦାଶ
୧୯୭ - ଡଃ ଶ୍ରୀରାମଚନ୍ଦ୍ର ଦାଶ
୧୯୮ - ମନ ମୋହନ ମିଶ୍ର
୧୯୯ - ଗୁରୁଚରଣ ପଟ୍ଟନାୟକ
୨୦୦ - କେଶବଚନ୍ଦ୍ର ସାହୁ
୨୦୧ - ପ୍ରଭାକର ପାଣିଗ୍ରାହୀ

### ୧୯୮୪-୮୫ ମସିହା

୨୦୨ - ଅନନ୍ତ ପଟ୍ଟନାୟକ
୨୦୩ - ହରିହର ପଟେଲ
୨୦୪ - ରମେଶଚନ୍ଦ୍ର ପାଣିଗ୍ରାହୀ
୨୦୫ - ରଜନୀକାନ୍ତ ଦାଶ
୨୦୬ - ଶତୃଘ୍ନ ନାଥ
୨୦୭ - ରାଧାମୋହନ ପାଣିଗ୍ରାହୀ
୨୦୮ - ଗୋପାଳ ଛୋଟରାୟ
୨୦୯ - ଶ୍ରୀଧର ହୋତା
୨୧୦ - ଚିତ୍ତରଞ୍ଜନ ଦାଶ
୨୧୧ - ସୁଧାଂଶୁ ଶେଖର ରାୟ
୨୧୨ - ନଳିନୀ ଶତପଥୀ

୨୧୩ - ଦାଶରଥି ଦାଶ
୨୧୪ - ଭାଗୀରଥୀ ପୂଜାରୀ
୨୧୫ - ନିତ୍ୟାନନ୍ଦ ଆଚାର୍ଯ୍ୟ

## ୧୯୮୬-୮୭ ମସିହା

୨୧୬ - ନାରାୟଣ ଚନ୍ଦ୍ର ସେନାପତି
୨୧୭ - ବୃନ୍ଦାବନ ଚନ୍ଦ୍ର ଦାସ
୨୧୮ - କୁଶ ବେହେରା
୨୧୯ - କୁଞ୍ଜବିହାରୀ ନାୟକ
୨୨୦ - ଦେବାନନ୍ଦ ସେନାପତି
୨୨୧ - ବୈଦ୍ୟନାଥ ମିଶ୍ର
୨୨୨ - କମଳଲୋଚନ ମହାନ୍ତି
୨୨୩ - ଡଃ ବିକ୍ରମ ଦାସ
୨୨୪ - ରାଜକିଶୋର ପଟ୍ଟନାୟକ
୨୨୫ - ଡଃ ସତ୍ୟବାଦୀ ମିଶ୍ର
୨୨୬ - ତ୍ରିଲୋଚନ ମେହେର
୨୨୭ - ଡଃ ଗୋକୁଳାନନ୍ଦ ମହାପାତ୍ର
୨୨୮ - ଡଃ ବଂଶୀଧର ମହାନ୍ତି
୨୨୯ - ଡଃ ଗୋପାଳଚନ୍ଦ୍ର ମିଶ୍ର
୨୩୦ - ଦୁର୍ଗାଚରଣ କୁଅଁର
୨୩୧ - ନୀରଦ ପ୍ରଭା ପଟ୍ଟନାୟକ
୨୩୨ - ରାମନାଥ ପଣ୍ଡା
୨୩୩ - ପଙ୍କଜିନୀ ଦାସ

## ୧୯୮୮ ମସିହା

୨୩୪ - ଶ୍ରୀ ଶେଷ ପ୍ରତାପ ସିଂହ ଦେବ
୨୩୫ - ପ୍ରିୟାଦତ୍ତ ଯୋଷୀ
୨୩୫ - ବୀରବର ଦାସ
୨୩୭ - ଗୋପୀନାଥ ସେନାପତି
୨୩୮ - ଡଃ ସୂର୍ଯ୍ୟକାନ୍ତ ଦାସ
୨୩୯ - ଚନ୍ଦ୍ରଶେଖର ମହାପାତ୍ର
୨୪୦ - ବ୍ରହ୍ମୋତ୍ରି ମହାନ୍ତି
୨୪୧ - କ୍ଷେତ୍ରବର ନାୟକ

## ୧୯୮୯ ମସିହା

୨୪୨ - କ୍ଷୀରଧର ପଟେଲ
୨୪୩ - ଦୟାଲାଲ ଯୋଷୀ
୨୪୪ - ବୈଦ୍ୟନାଥ ମିଶ୍ର
୨୪୫ - କୁନ୍ତଳାକୁମାରୀ ଆଚାର୍ଯ୍ୟ
୨୪୬ - ରାଧାକୃଷ୍ଣ ରଥଶର୍ମା
୨୪୭ - ସୂର୍ଯ୍ୟନାରାୟଣ ପଟ୍ଟନାୟକ
୨୪୮ - ନଦୀୟାଚାନ୍ଦ ଧଳ ସାମନ୍ତ

## ୧୯୯୦ ମସିହା

୨୪୯ - କୀର୍ତ୍ତନ ବିହାରୀ ଆଚାର୍ଯ୍ୟ
୨୫୦ - ଶ୍ରୀବତ୍ସ ନାୟକ
୨୫୧ - ମୁକ୍ତେଶ୍ୱର ପଟେଲ
୨୫୨ - ଗୌରମୋହନ ମାହାପାତ୍ର
୨୫୩ - କେଶବଚନ୍ଦ୍ର ମେହେର
୨୫୪ - ସୌଦାମିନୀ ଉଦ୍‌ଗାତା
୨୫୫ - ବନମାଳି ସେନାପତି
୨୫୬ - ଭାଗୀରଥି ନେପାଳ
୨୫୭ - ବନଜ ଦେବୀ
୨୫୮ - ଅଚ୍ୟୁତାନନ୍ଦ ପତି

## ୧୯୯୧ ମସିହା

୨୫୯ - ଦଣ୍ଡପାଣି ମିଶ୍ର
୨୬୦ - ଖାନ୍‌ଅବ୍‌ଦୁଲ୍ ମଲ୍ଲିକ
୨୬୧ - ତାରାମଣି ଆଚାର୍ଯ୍ୟ
୨୬୨ - ସଚ୍ଚିଦାନନ୍ଦ କାନୁନ୍‌ଗୋ
୨୬୩ - ଜାନକୀ ବଲ୍ଲଭ ମହାନ୍ତି
୨୬୪ - ଡଃ ମନ୍ମଥନାଥ ଦାସ
୨୬୫ - ହରମୋହନ ଦାଶ
୨୬୬ - ମଦନ ମୋହନ ମିଶ୍ର

୨୬୭ - ବିଜୟ କୃଷ୍ଣ ମହାନ୍ତି
୨୬୮ - ଡଃ ସୀମାଞ୍ଚଳ ପଟ୍ଟନାୟକ
୨୬୯ - ମୋହିତ ମୋହନ ମହାପାତ୍ର
୨୭୦ - ବସନ୍ତ କୁମାରୀ ଦେବୀ
୨୭୧ - ଗଣେଶ ପ୍ରସାଦ ପଟେଲ
୨୭୨ - ସତ୍ୟାନନ୍ଦ ପୂଜାରୀ
୨୭୩ - ବୈଷ୍ଣବ ଚରଣ ଦାସ

## ୧୯୯୨ ମସିହା

୨୭୪ - ଶ୍ରୀଧର ଶତପଥୀ
୨୭୫ - ଅନ୍ନପୂର୍ଣ୍ଣା ମହାରଣା
୨୭୬ - ବଳରାମ ମହାନ୍ତି
୨୭୭ - ବନଜାକ୍ଷୀ ପଣ୍ଡା
୨୭୮ - ଗଣେଶ ପ୍ରସାଦ ପରିଜା
୨୭୯ - ନୀଳମଣି ମିଶ୍ର
୨୮୦ - ଶ୍ରୀନିବାସ ଉଦ୍‌ଗାତା
୨୮୧ - ବାଳମୁକୁନ୍ଦ ପଟ୍ଟନାୟକ

## ୧୯୯୩ ମସିହା

୨୮୨ - କୈଳାସ ଚନ୍ଦ୍ର ଦଣ୍ଡସେଣା
୨୮୩ - ଭୀମସେନ ପାଠୀଶର୍ମା
୨୮୪ - ପ୍ରାଣବନ୍ଧୁ କର
୨୮୫ - ଅନ୍ନପୂର୍ଣ୍ଣା ମିଶ୍ର
୨୮୬ - ସାଧୁଚରଣ ପଟ୍ଟନାୟକ
୨୮୭ - ବାଞ୍ଛାନିଧି ଦାସ
୨୮୮ - ତୁଳସୀ ଦାସ
୨୮୯ - ପଠାଣୀ ପଟ୍ଟନାୟକ
୨୯୦ - ବ୍ରଜେନ୍ଦ୍ର ନାଥଦତ୍ତ
୨୯୧ - ସୁଜାତା ପ୍ରିୟମ୍ବଦା

## ୧୯୯୪ ମସିହା

୨୯୨ - ଇନ୍ଦୁଭୂଷଣ ମିଶ୍ର
୨୯୩ - ନାରାୟଣ ଭରସା ମେହେର
୨୯୪ - ଗୋପୀନାଥ ବେହେରା
୨୯୫ - ସତ୍ୟାନନ୍ଦ ଚମ୍ପତିରାୟ
୨୯୬ - ଶ୍ରୀନିବାସ ମିଶ୍ର
୨୯୭ - ବଳରାମ ପଟ୍ଟନାୟକ
୨୯୮ - ମଧୁସୂଦନ ଗୁରୁ
୨୯୯ - ଉମାଶଙ୍କର ପଣ୍ଡା
୩୦୦ - ସ୍ନେହଲତା ମହାନ୍ତି
୩୦୧ - ଉପେନ୍ଦ୍ର ନାଥ ହୋତା
୩୦୨ - ଶ୍ରୀମତୀ ବୀଣାଦେବୀ
୩୦୩ - ଗାୟତ୍ରୀବସୁ ମଲ୍ଲିକ

## ୧୯୯୫ ମସିହା

୩୦୪ - ରାମଚନ୍ଦ୍ର ଆଚାର୍ଯ୍ୟ
୩୦୫ - କ୍ଷୀରୋଦ ପରିଜା
୩୦୬ - ଚଣ୍ଡିଚରଣ ବିଶି
୩୦୭ - ଶିବପ୍ରସାଦ ପାଣ୍ଡିଆ
୩୦୮ - ସୁରେନ୍ଦ୍ର ନାଥ ଶତପଥୀ
୩୦୯ - କୈଳାସ ଚନ୍ଦ୍ର ରଥ
୩୧୦ - ମହେଶ୍ୱର ପଣ୍ଡା
୩୧୧ - ଗୋକୁଳାନନ୍ଦ ପ୍ରହରାଜ
୩୧୨ - ଯୁଗଳ କିଶୋର ଦତ୍ତ
୩୧୩ - ରମେଶ ଚନ୍ଦ୍ର ଧଳ

## ୧୯୯୬ ମସିହା

୩୧୪ - ପଦ୍ମଲୋଚନ ପାଢ଼ୀ
୩୧୫ - ଗଙ୍ଗାଧର ଶତପଥୀ
୩୧୬ - ଧନେଶ୍ୱର ପାଣି
୩୧୭ - ଗଣନାଥ ଦାସ

୩୧୮ - ଗୋଲକଚନ୍ଦ୍ର ମହାନ୍ତି
୩୧୯ - ରଘୁନାଥ ପଟ୍ଟନାୟକ
୩୨୦ - ପ୍ରଫୁଲ୍ଲ ଦାସ
୩୨୧ - ଶୈଳରାଣୀ ମିଶ୍ର
୩୨୨ - ଚନ୍ଦ୍ରମଣି ପଣ୍ଡା
୩୨୩ - କୃପାମୟ ମହାପାତ୍ର

## ୧୯୯୭ ମସିହା

୩୨୪ - ମନମୋହନ ମହାପାତ୍ର
୩୨୫ - ଡଃ କୁଳମଣି ମହାପାତ୍ର
୩୨୬ - ନରସିଂହ ମିଶ୍ର
୩୨୭ - ଅମୀୟ ବସୁ
୩୨୮ - ହୃଦାନନ୍ଦ ରାୟ
୩୨୯ - ଡଃ ବିଚିତ୍ରା ନନ୍ଦ ମହାନ୍ତି
୩୩୦ - ଗୀତା ହୋତା
୩୩୧ - ରାମଚନ୍ଦ୍ର ବ୍ରହ୍ମା

## ୧୯୯୮ ମସିହା

୩୩୨ - ପ୍ରହ୍ଲାଦ ମିଶ୍ର
୩୩୩ - ଗୋବିନ୍ଦଚନ୍ଦ୍ର ହରିଚନ୍ଦନ ଜଗଦେବ
୩୩୪ - ବ୍ରଜସୁନ୍ଦର ପଟ୍ଟନାୟକ
୩୩୫ - ମୁରଲୀଧର ମଲ୍ଲିକ
୩୩୬ - ରାଜାରାମ ମେହେର
୩୩୭ - ଡଃ ହରିହର ରଥ
୩୩୮ - ଡଃ ରେଖା ମହାନ୍ତି
୩୩୯ - ଅର୍ଜୁନ ନାଲ୍ଲା
୩୪୦ - ଡଃ ପବିତ୍ର ମୋହନ ନାୟକ

## ୧୯୯୯ ମସିହା

୩୪୧ - କୃଷ୍ଣଚନ୍ଦ୍ର ପଟ୍ଟନାୟକ
୩୪୨ - ବିଜୟ କୁମାର ବାରିକ
୩୪୩ - ପ୍ରସନ୍ନ କୁମାରୀ ଦେବୀ
୩୪୪ - ଶୁଭେନ୍ଦୁ ମୋହନ ଶ୍ରୀଚନ୍ଦନସିଂହ
୩୪୫ - ଡଃ ମଧୁସୂଦନ ପତି
୩୪୬ - ଡଃ କୃଷ୍ଣ ଚରଣ ବେହେରା
୩୪୭ - ଡଃ ସରସ୍ୱତୀ ସ୍ୱାଇଁ
୩୪୮ - ଡଃ ବ୍ରଜମୋହନ ମହାନ୍ତି
୩୪୯ - ମଂଗଳୁ ଚରଣ ବିଶ୍ୱାଳ
୩୫୦ - ଡଃ ହରିହର ଦାସ
୩୫୧ - ଗୌରହରି ପଣ୍ଡା
୩୫୨ - କସ୍ତୁରୀ ଚରଣ ଦାସ
୩୫୩ - ମାଧବଚନ୍ଦ୍ର ଶତପଥୀ
୩୫୪ - ଉଦୟନାଥ ଚନ୍ଦନ
୩୫୫ - ଡଃ ଅର୍ଜୁନ ଶତପଥୀ
୩୫୬ - ଉତ୍କଳିଂନା ଦାସ
୩୫୭ - ଘନଶ୍ୟାମ ତ୍ରିପାଠୀ
୩୫୮ - ହେମଲତା ଦାସ

## ଅତିବଡୀ ଜଗନ୍ନାଥ ଦାସ ପୁରସ୍କାର

## ୨୦୦୧ ମସିହା

ଶ୍ରୀମତୀ ବସନ୍ତ କୁମାରୀ ପଟ୍ଟନାୟକ

## ୨୦୦୧ ମସିହା

୩୫୯ - ଶ୍ରମତୀ ବୀଣା ମହାପାତ୍ର
୩୬୦ - ଶ୍ରୀ ଉମାକାନ୍ତ ବେହେରା
୩୬୧ - ଶ୍ରୀ ଶରତ ନାରାୟଣ ବେହେରା
୩୬୨ - ଶ୍ରୀ ନାରାୟଣ ପ୍ରସାଦ ପଟ୍ଟନାୟକ
୩୬୩ - ଶ୍ରୀ ହଟକିଶୋର ପାଣିଗ୍ରାହୀ
୩୬୪ - ଶ୍ରୀ ଅବଦୁସ୍ ସମଦ୍
୩୬୫ - ଡଃ ସୂର୍ଯ୍ୟ ନାରାୟଣ ଦାସ
୩୬୬ - ଡଃ ନରେନ୍ଦ୍ର ନାଥ ମିଶ୍ର

## ଫକୀରମୋହନ ସାହିତ୍ୟ ସଂସଦ (ବାଲେଶ୍ୱର) ଦ୍ୱାରା

## 'ଫକୀରମୋହନ ସାହିତ୍ୟଶ୍ରୀ ପୁରସ୍କାର'

୨୦୦୦ ମସିହା – ଡଃ ବ୍ରଜମୋହନ ମହାନ୍ତି

୨୦୦୧ ମସିହା – ଶ୍ରୀ ପ୍ରିୟବ୍ରତ ଦାସ

୨୦୦୨ ମସିହା– ବନଜ ଦେବୀ

## ଗୋକର୍ଣ୍ଣିକା ସାହିତ୍ୟ ସମାଜ, ଧର୍ମଶାଳା, ଯାଜପୁର ଦ୍ୱାରା

## 'ଗୋକର୍ଣ୍ଣିକା ପୁରସ୍କାର'

୧. ଶ୍ରୀ ଅଚ୍ୟୁତାନନ୍ଦ ପତି - ୧୯୮୩
୨. ଶ୍ରୀ ଦୀପକ ମିଶ୍ର - ୧୯୮୪
୩. ଶ୍ରୀ ଚିତ୍ତରଞ୍ଜନ ମିଶ୍ର - ୧୯୮୫
୪. ଡଃ ଖଗେଶ୍ୱର ମହାପାତ୍ର - ୧୯୮୬
୫. ଡଃ ବୈଷ୍ଣବ ଚରଣ ସାମଲ - ୧୯୮୭
୬. ଡଃ ଦେବକାନ୍ତ ମିଶ୍ର - ୧୯୮୮
୭. ଡଃ କୃଷ୍ଣ ଚରଣ ବେହେରା - ୧୯୮୯
୮. ଶ୍ରୀ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ - ୧୯୯୦
୯. ଶ୍ରୀ ଶତ୍ରୁଘ୍ନ ନାଥ - ୧୯୯୧
୧୦. ଡଃ ନିତ୍ୟାନନ୍ଦ ଶତପଥୀ - ୧୯୯୨
୧୧. ଡଃ ଗଙ୍ଗାଧର ବଳ - ୧୯୯୩
୧୨. ଶ୍ରୀ ହର ପ୍ରସାଦ ଦାସ - ୧୯୯୪
୧୩. ଶ୍ରୀମତୀ ବୀଣାପାଣି ମହାନ୍ତି - ୧୯୯୫
୧୪. ଡଃ ବିଜୟ କୁମାର ଶତପଥୀ - ୧୯୯୬
୧୫. ଶ୍ରୀ ବ୍ରଜନାଥ ରଥ - ୧୯୯୭
୧୬. ଡଃ ହେମନ୍ତ କୁମାର ଦାସ - ୧୯୯୮
୧୭. ଶ୍ରୀ ନୃସିଂହ ପ୍ରସାଦ ତ୍ରିପାଠୀ - ୧୯୯୯
୧୮. ଡଃ ଗଗନେନ୍ଦ୍ର ନାଥ ଦାଶ - ୨୦୦୦

## ଗଙ୍ଗାଧର ସାହିତ୍ୟ ପରିଷଦ (ବରପାଲି) ଦ୍ୱାରା ପ୍ରଦତ୍ତ

## ଗଙ୍ଗାଧର ସାରସ୍ୱତ ସମ୍ମାନ

| | | |
|---|---|---|
| ୧. | ଚିତ୍ତରଞ୍ଜନ ଦାସ | ୧୯୯୭ |
| ୨. | ଡଃ ଗଙ୍ଗାଧର ଗୁରୁ | ୧୯୯୮ |
| ୩. | ଡଃ କେଶବ ଚନ୍ଦ୍ର ମେହେର | ୧୯୯୯ |
| ୪. | ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ | ୨୦୦୦ |
| ୫. | ଡଃ ହରେକୃଷ୍ଣ ମେହେର | ୨୦୦୧ |

## ଉପେନ୍ଦ୍ରଭଞ୍ଜ ଫାଉଣ୍ଡେସନ୍- ଭଞ୍ଜନଗର ଦ୍ୱାରା ଭଞ୍ଜ ସମ୍ମାନ ପୁରସ୍କାର

୧. ଶ୍ରୀ ଚନ୍ଦ୍ରଶେଖର ଦାସବର୍ମା - ୧୯୯୬
୨. ଶ୍ରୀ ନିରଞ୍ଜନ ମହାନ୍ତି - ୧୯୯୭
୩. ଶ୍ରୀ ଚନ୍ଦ୍ରଶେଖର ନନ୍ଦ - ୧୯୯୮
୪. ଅଶ୍ୱିନୀ କୁମାର ମିଶ୍ର - ୨୦୦୦
୫. ଶ୍ରୀ ରବିନାରାୟଣ ସେନାପତି - ୨୦୦୧
୬. ରଂଜିତା ନାୟକ - ୨୦୦୨

## କବି ବସନ୍ତ ମୁଦୁଲି ସ୍ମୃତି ପୁରସ୍କାର, ଭଦ୍ରକ

୧. ସୁନୀଲ ପୃଷ୍ଟି - ୧୯୮୭
୨. କୁମାର ହସନ - ୧୯୮୮
୩. ଆଶୁତୋଷ ପରିଡ଼ା - ୧୯୯୦
୪. ସୌଭାଗ୍ୟବନ୍ତ ମହାରଣା - ୧୯୯୧
୫. ରାମକୃଷ୍ଣ ସାହୁ - ୧୯୯୨
୬. ପ୍ରବାସିନୀ ମହାକୁଡ଼ - ୧୯୯୩
୭. ସେନାପତି ପ୍ରଦ୍ୟୁମ୍ନ କେଶରୀ - ୧୯୯୪
ଓ ଅପର୍ଣ୍ଣା ମହାନ୍ତି
୮. ସୁଚେତା ମିଶ୍ର - ୧୯୯୫
୯. ଅଖିଳ ନାୟକ - ୧୯୯୬
୧୦. ପୀତାମ୍ବର ତରାଇ - ୧୯୯୭
୧୧. ଅକ୍ଷୟ ବେହେରା - ୧୯୯୮
୧୨. ବାସୁଦେବ ସୁନାନୀ - ୧୯୯୯
୧୩. ବୀଣାପାଣି ପଣ୍ଡା - ୨୦୦୦
୧୪. ଭାରତ ମାଝୀ - ୨୦୦୧

## ସାରସ୍ୱତ ସାହିତ୍ୟ ସାଂସ୍କୃତିକ ପରିଷଦ (ଯାଜପୁର)ର 'ବର୍ତ୍ତିକା' ପୁରସ୍କାର

୧. ପ୍ରଫେସର ପଠାଣି ପଟ୍ଟନାୟକ - ୧୯୯୪
୨. ପ୍ରଫେସର ବେଣୁଧର ରାଉତ - ୧୯୯୫
୩. ଶ୍ରୀ ବିପିନ ବିହାରୀ ମିଶ୍ର - ୧୯୯୬
୪. ✓ ବସନ୍ତ କୁମାର ଦେବୀ - ୧୯୯୭
୫. ଇଂ. ଆଲୋକ ସୁନ୍ଦର ମହାନ୍ତି - ୧୯୯୮
୬. ପ୍ରଫେସର ଚିତ୍ତରଞ୍ଜନ ଦାସ - ୧୯୯୯
୭. ପ୍ରଫେସର ଚନ୍ଦ୍ରଶେଖର ରଥ - ୨୦୦୦
୮. ଶ୍ରୀ ସୁରେଶ କୁମାର ଶତପଥୀ - ୨୦୦୧

## ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରଦତ୍ତ
## ଗଙ୍ଗାଧର ଜାତୀୟ ପୁରସ୍କାର

| | | | |
|---|---|---|---|
| ୧. | ସର୍ଦ୍ଦାର ଅଲ୍ଲୀ ଜାଫ୍‌ରୀ | ୧୯୯୧ | ଉର୍ଦ୍ଦୁ |
| ୨. | ନବକାନ୍ତ ବରୁଆ | ୧୯୯୨ | ଆସାମୀ |
| ୩. | ଶାନ୍ତି ଚଟ୍ଟୋପାଧ୍ୟାୟ | ୧୯୯୩ | ବଙ୍ଗଳା |
| ୪. | ଜୟନ୍ତ ମହାପାତ୍ର | ୧୯୯୪ | ଇଣ୍ଡୋ-ଇଂଲିଶ୍ |
| ୫. | କେଦାର ନାଥ ସିଂହ | ୧୯୯୫ | ହିନ୍ଦୀ |
| ୬. | କେ. ଆୟପ୍‌ପା ପାନିକର | ୧୯୯୬ | ମାଲାୟଲାମ୍ |
| ୭. | ସୀତାକାନ୍ତ ମହାପାତ୍ର | ୧୯୯୭ | ଓଡ଼ିଆ |
| ୮. | ନିରୂପମା କାଉର୍ | ୧୯୯୮ | ପଞ୍ଜାବୀ |
| ୯. | ରମାକାନ୍ତ ରଥ | ୧୯୯୯ | ଓଡ଼ିଆ |
| ୧୦. | କେ. ସଚ୍ଚିଦାନନ୍ଦ | ୨୦୦୦ | |

*ବାଲେଶ୍ୱରସ୍ଥ ଦୀନକୃଷ୍ଣ ସ୍ମୃତିପରିଷଦ ଜଳେଶ୍ୱର ତରଫରୁ ଦୀର୍ଘ ବାଇଶିବର୍ଷ ଧରି ବହୁ ସାରସ୍ୱତ ସାଧକମାନଙ୍କୁ ଉପାୟନ ତଥା ସମ୍ମାନ ଦିଆଯାଇଆସୁଅଛି । 'ବାର୍ତ୍ତା ପ୍ରତିଷ୍ଠାନ' ମେଘଡ଼ମ୍ବରୁ କୁରୁଡ଼ା (ବାଲେଶ୍ୱର) ତରଫରୁ 'ଚନ୍ଦ୍ରଭାଗା' ସାହିତ୍ୟ-ସଂସ୍କୃତି ପ୍ରତିଷ୍ଠାନ (ବାଲେଶ୍ୱର) ତରଫରୁ ମଧ ଦୀର୍ଘଦିନ ଧରି ଚନ୍ଦ୍ରଭାଗା ପୁରସ୍କାର ଦିଆଯାଇ ଆସୁଅଛି । ଯାଜପୁରର 'ବିବର୍ତ୍ତନ' ସାଂସ୍କୃତିକ ମଞ୍ଚ ସାରସ୍ୱତ ପୁରସ୍କାର ଦିଆଯାଉଅଛି । ଯାଜପୁରର 'ବିବର୍ତ୍ତନ' ସାଂସ୍କୃତିକ ମଞ୍ଚ ସାରସ୍ୱତ ପୁରସ୍କାର ଦିଆଯାଉଅଛି । ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ପ୍ରାୟ ପୁରସ୍କାର ଦିଆଯାଉଅଛି । ସେଗୁଡ଼ିକର ଧାରାବାହିକ ବିବରଣୀ ପାଇ ନଥିବାରୁ ଏଥିରେ ଦିଆଯାଇ ପାରିନି । ସଂଗ୍ରହ ହେଲେ ପରବର୍ତ୍ତୀ ସଂସ୍କରଣରେ ପ୍ରକାଶ କରାଯିବ ।*

# ସ୍ରଷ୍ଟାମାନଙ୍କର ପରିଚିତି

୧ - ଗୋପୀନାଥ ମହାନ୍ତି
୨ - କାହ୍ନୁଚରଣ ମହାନ୍ତି
୩ - ଗୋଦାବରୀଶ ମିଶ୍ର
୪ - ସଚ୍ଚି ରାଉତରାୟ
୫ - ନୀଳକଣ୍ଠ ଦାସ
୬ - ବୈକୁଣ୍ଠ ନାଥ ପଟ୍ଟନାୟକ
୭ - ଗୋଦାବରୀଶ ମହାପାତ୍ର
୮ - ସୁରେନ୍ଦ୍ର ମହାନ୍ତି
୧୦ - ମନୋରଞ୍ଜନ ଦାସ
୧୧ - ମନୋଜ ଦାସ
୯ - ବିନୋଦ ଚନ୍ଦ୍ର ନାୟକ
୧୨ - ସୀତାକାନ୍ତ ମହାପାତ୍ର
୧୩ - ଗୁରୁପ୍ରସାଦ ମହାପାତ୍ର
୧୪ - ରାଧାମୋହନ ଗଡ଼ନାୟକ
୧୫ - କିଶୋରୀ ଚରଣ ଦାସ
୧୬ - କାଳୀ ଚରଣ ପଟ୍ଟନାୟକ
୧୭ - ରମାକାନ୍ତ ରଥ
୧୮ - କୁଞ୍ଜ ବିହାରୀ ଦାଶ
୧୯ - ଅନନ୍ତ ପଟ୍ଟନାୟକ
୨୦ - ଅଖିଳମୋହନ ପଟ୍ଟନାୟକ
୨୧ - ଗୋପାଳ ଛୋଟରାୟ
୨୨ - ହରେକୃଷ୍ଣ ମହତାବ
୨୩ - ମହାପାତ୍ର ନୀଳମଣିସାହୁ
୨୪ - ରାଜେନ୍ଦ୍ର ପଣ୍ଡା
୨୫ - ସୌଭାଗ୍ୟ କୁମାର ମିଶ୍ର
୨୬ - ନିତ୍ୟାନନ୍ଦ ମହାପାତ୍ର
୨୭ - ଭାନୁଜୀ ରାଓ
୨୮ - ସୌରୀନ୍ଦ୍ର ବାରିକ
୨୯ - ବୀଣାପାଣି ମହାନ୍ତି
୩୦ - ଜଗନ୍ନାଥ ପ୍ରସାଦ ଦାସ
୩୧ - ରବି ପଟ୍ଟନାୟକ
୩୨ - ଶାନ୍ତନୁ କୁମାର ଆଚାର୍ଯ୍ୟ
୩୩ - ଗୁରୁଚରଣ ପଟ୍ଟନାୟକ
୩୪- ନୃସିଂହ ଚରଣ ପଣ୍ଡା
୩୫ - ଚନ୍ଦ୍ରଶେଖର ରଥ
୩୬ - ଶରତକୁମାର ମହାନ୍ତି
୩୭ - ଚିତ୍ତ ରଞ୍ଜନ ଦାସ
୩୮ - ପ୍ରତିଭା ରାୟ
୩୯- କୃଷ୍ଣପ୍ରସାଦ ମିଶ୍ର
୪୦ - ପ୍ରତିଭା ଶତପଥୀ
୪୧ - ରାମଚନ୍ଦ୍ର ବେହେରା
୪୨ - ସୂର୍ଯ୍ୟନାରାୟଣ ଦାଶ
୪୩ - ଜ୍ଞାନୀନ୍ଦ୍ର ବର୍ମା
୪୪ - ସତ୍ୟନାରାୟଣ ରାଜଗୁରୁ
୪୫ - ବିଭୂତି ପଟ୍ଟନାୟକ
୪୬ - ଗୋଲକ ବିହାରୀ ଧଳ
୪୭ - ଭଞ୍ଜ କିଶୋର ପଟ୍ଟନାୟକ
୪୮ - ରାମ ଚନ୍ଦ୍ର ମିଶ୍ର
୪୯ -ସାତକଡ଼ି ହୋତା
୫୦ - ଯଦୁନାଥ ଦାଶ ମହାପାତ୍ର
୫୧ - ମନମୋହନ ଚୌଧୁରୀ
୫୨ - ତରୁଣକାନ୍ତି ମିଶ୍ର
୫୩ - ନଟବର ସମାନ୍ତରାୟ
୫୪- ବେଣୁଧର ରାଉତ
୫୫ - ରବୀନ୍ଦ୍ର ନାଥ ସିଂହ
୫୬ - ବାମା ଚରଣ ମିତ୍ର
୫୭ - ବସନ୍ତ ଶତପଥୀ
୫୮ - ବଂଶୀଧର ମହାନ୍ତି
୫୯ - ଚୌଧୁରୀ ଦେବକାନ୍ତମିଶ୍ର
୬୦ - ଚିନ୍ତାମଣି ବେହେରା
୬୧ - ରତ୍ନାକର ଚଇନି
୬୨ - ଦାଶରଥି ଦାଶ
୬୩ - ଭୁବନେଶ୍ୱର ବେହେରା
୬୪ - ରାମକୃଷ୍ଣ ନନ୍ଦ
୬୫ - ବିଜୟ ମିଶ୍ର
୬୬ - ଦୀପକ ମିଶ୍ର
୬୭ - ପ୍ରଫୁଲ୍ଲ କୁମାର ତ୍ରିପାଠୀ
୬୮ - ଅସିତ କବି

୬୯ - କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
୭୦ - କମଳାକାନ୍ତ ଲେଙ୍କା
୭୧ - ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
୭୨ - ପ୍ରାଣବନ୍ଧୁ କର
୭୩ - ଅଚ୍ୟୁତାନନ୍ଦ ପତି
୭୪ - ବିଭୂତି ଭୂଷଣ ତ୍ରିପାଠୀ
୭୫ - ଆନନ୍ଦ ଶଙ୍କର ଦାସ
୭୬ - ଦୁର୍ଗାମାଧବ ମିଶ୍ର
୭୭ - ଉଦୟ ନାଥ ଷଡ଼ଙ୍ଗୀ
୭୮ - ଉମାଶଙ୍କର ପଣ୍ଡା
୭୯ - ବ୍ରହ୍ମୋତ୍ରି ମହାନ୍ତି
୮୦ - କମଳଲୋଚନ ମହାନ୍ତି
୮୧ - ବ୍ରଜନାଥ ରଥ
୮୨ - ରମେଶ ପ୍ରସାଦ ପାଣିଗ୍ରାହୀ
୮୩ - କାର୍ତ୍ତିକ ଚନ୍ଦ୍ର ରଥ
୮୪ - ହରପ୍ରସାଦ ଦାସ
୮୫ - ଦାଶବେନହୁର
୮୬ - ପ୍ରସନ୍ନ କୁମାର ମିଶ୍ର
୮୭ - ସଦାଶିବ ମିଶ୍ର
୮୮ - ସୁଦର୍ଶନ ଆଚାର୍ଯ୍ୟ
୮୯ - ରାଜକିଶୋର ରାୟ
୯୦ - ଶକୁନ୍ତଳା ଦେବୀ
୯୧ - ବିଜୟ କୁମାର ଶତପଥୀ
୯୨ - ଜଗନ୍ନାଥ ପଟ୍ଟନାୟକ
୯୩ - ସୁରେନ୍ଦ୍ର ନାଥ ଦ୍ୱିବେଦୀ
୯୪ - ନଦିଆ ବିହାରୀ ମହାନ୍ତି
୯୫ - ଦିଗମ୍ବର ମହାପାତ୍ର
୯୬ - ହେମନ୍ତ କୁମାର ଦାସ
୯୭ - ଡଃ ଗଂଗାଧର ବଳ
୯୮ - ଦୀନ ନାଥ ପାଠୀ
୯୯ - ଶରତ ଚନ୍ଦ୍ର ପ୍ରଧାନ
୧୦୦ - ବିପିନ ବିହାରୀ ମିଶ୍ର
୧୦୧ - ଶ୍ରଦ୍ଧାକର ସୂପକାର
୧୦୨ - ଦେବ୍ରାଜ ଲେଙ୍କା
୧୦୩ - ଶତୃଘ୍ନ ନାଥ
୧୦୪ - ଫନୀ ମହାନ୍ତି
୧୦୫ - ବଳରାମ ପଟ୍ଟନାୟକ
୧୦୬ - ହୃଷୀକେଶ ପଣ୍ଡା
୧୦୭ - ବନବିହାରୀ ପଣ୍ଡା
୧୦୮ - ବେଣୀମାଧବ ପାଢ଼ୀ
୧୦୯ - ମାନସୀ ଦାସ
୧୧୦ - ଚନ୍ଦ୍ରଶେଖର ନନ୍ଦ
୧୧୧ - ବୈଦ୍ୟନାଥ ମିଶ୍ର
୧୧୨ - କେଶବଚନ୍ଦ୍ର ମେହେର
୧୧୩ - ରଞ୍ଜିତା ନାୟକ
୧୧୪ - ସୁରେନ୍ଦ୍ର ନାଥ ଶତପଥୀ
୧୧୫ - ସହଦେବ ସାହୁ
୧୧୬ - ବ୍ରହ୍ମାନନ୍ଦ ଦାସ
୧୧୭ - ଯୁଗଳ କିଶୋର ଦତ୍ତ
୧୧୮ - ଅନାଦି ସାହୁ
୧୧୯ - ବିଜୟ ପ୍ରସାଦ ମହାପାତ୍ର
୧୨୦ - ପ୍ରଦୀପ ଦାଶ
୧୨୧ - ଆନନ୍ଦ ଚନ୍ଦ୍ର ପହି
୧୨୨ - ହୃଷୀକେଶ ମଲ୍ଲିକ
୧୨୩ - ଡଃ କୃଷ୍ଣ ଚରଣ ବେହେରା
୧୨୪ - ଡଃ ମନୋରାମା ବିଶ୍ୱାଳ ମହାପାତ୍ର
୧୨୫ - ନାରୁ ମହାନ୍ତି
୧୨୬ - ଡଃ ପ୍ରମୋଦ କୁମାର ତ୍ରିପାଠୀ
୧୨୭ - ଡଃ ମହେନ୍ଦ୍ର କୁମାର ମିଶ୍ର
୧୨୮ - ଡଃ ବିଦ୍ୟାଧର ମିଶ୍ର
୧୨୯ - ବସନ୍ତ କୁମାରୀ ଦେବୀ
୧୩୦ - ଶ୍ରୀ ଜ୍ୟୋର୍ତିମୟୀ ମହାନ୍ତି
୧୩୧ - ବିନୋଦ କାନୁନ୍‌ଗୋ
୧୩୨ - ବିଜୟକୃଷ୍ଣ ମହାନ୍ତି
୧୩୩ - ଜଗଦୀଶ ମହାନ୍ତି
୧୩୪ - ଜାନକୀ ବଲ୍ଲଭପଟ୍ଟନାୟକ
୧୩୫ - ନାରାୟଣ ସାହୁ
୧୩୬ - ବିଜୟିନୀ ଦାସ
୧୩୭ - ପଦ୍ମଜ ପାଳ
୧୩୮ - ଶ୍ରୀନିବାସ ଉଦ୍‌ଗାତା
୧୩୯ - ପ୍ରସନ୍ନ କୁମାର ପାଟଶାଣୀ



# ଗୋପୀନାଥ ମହାନ୍ତି

## (୧୯୧୪-୧୯୯୧)

ଓଡ଼ିଆ ସାହିତ୍ୟର ଲବ୍ଧ ପ୍ରତିଷ୍ଠିତ କଥାକାର ଭାବରେ ଗୋପୀନାଥ ମହାନ୍ତି ପରିଚିତ । କଟକ ଜିଲ୍ଲାର ନାଗବାଲି ଗ୍ରାମରେ ୧୯୧୪ ମସିହା ଏପ୍ରିଲ୍ ୨୦ ତାରିଖରେ ସେ ଜନ୍ମ ହୋଇଥିଲେ । ଏକାଧାରାରେ ସେ ଜଣେ ପ୍ରଶାସକ, ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ । ଆଦିବାସୀ ଜନଜୀବନକୁ ନେଇ ସେ ମନୋଜ୍ଞ ଭାବରେ ଉପନ୍ୟାସ ଗୁଡ଼ିକରେ ରୂପ ଦେଇଛନ୍ତି । ୧୯୫୫ ମସିହାରେ 'ଅମୃତରସନ୍ତାନ' ଉପନ୍ୟାସ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ୧୯୭୪ ମସିହାରେ 'ମାଟିମଟାଳ' ଉପନ୍ୟାସ ପାଇଁ ଜ୍ଞାନପୀଠ ପୁରସ୍କାର, ୧୯୮୧ ମସିହାରେ 'ପଦ୍ମଭୂଷଣ ସମ୍ମାନରେ ଭୂଷିତ ହୋଇଛନ୍ତି ।

**ଉପନ୍ୟାସ:** ମନଗହୀରର ଚାଷ - ୧୯୪୦, ଦାଦିବୁଢ଼ା - ୧୯୪୪, ପରଜା - ୧୯୪୫ ଅମୃତର ସନ୍ତାନ - ୧୯୪୭, ହରିଜନ - ୧୯୪୮, ଶରତବାବୁଙ୍କ ଗଳି - ୧୯୫୦ ରାହୁର ଛାୟା - ୧୯୫୨, ଦୁଇପତ୍ର - ୧୯୫୪, ସପନମାଟି - ୧୯୫୪ ଦାନାପାଣି - ୧୯୫୫, ଶିବୁଭାଇ - ୧୯୫୫, ଅପହଞ୍ଚ - ୧୯୬୧, ଲୟବିଲୟ - ୧୯୬୧, ତନ୍ତ୍ରୀକାର - ୧୯୬୩, ମାଟିମଟାଳ - ୧୯୬୪, ପାହାନ୍ତା - ୧୯୭୦, ଆକାଶ ସୁନ୍ଦରୀ - ୧୯୭୨, ଅନଳନଳ- ୧୯୭୩, ମନରନିଆଁ ଓ ଚିଲପୁରୀ -୧୯୭୯, ଦିଗଦିହୁଡ଼ି - ୧୯୭୯, ବୁନ୍ଦାଏପାଣି - ୧୯୮୮, କିଛି କହିବାକୁ ଚାହେଁ - ୧୯୮୯, ଜାନକୀ ମା - ୧୯୮୯, ମେରିଆ - ୧୯୮୯

**ଗଳ୍ପସଂକଳନ** : ଘାସଫୁଲ - ୧୯୫୧, ପୋଡ଼ାକପାଳ - ୧୯୫୧ ନବବଧୂ -୧୯୫୨, ଛାଇଆଲୁଅ - ୧୯୫୯ ରଣଧନ୍ଦୋଳ - ୧୯୬୩, ଗୁପ୍ତଗଂଗା - ୧୯୬୭, ନାଁ ମନେନାହିଁ - ୧୯୬୮, ଉଡ଼ନ୍ତା ଖଇ - ୧୯୭୧, ବଘେଇ -, ଶରଶଯ୍ୟା, ତିନିକାଳ । ଜୀବନୀ- ଦୀପଂଜ୍ୟୋତି - ୧୯୬୫, ଉତ୍କଳମଣି - ୧୯୬୭, ଧୂଳିମାଟିସନ୍ଥ (ଗୋପବନ୍ଧୁ ଚୌଧୁରୀ) - ୧୯୮୫, ନାଟକ - ମୁକ୍ତିପଟେ - ୧୯୩୭, ଦିନଦି ପହରେ - ୧୯୩୭, ମହାପୁରୁଷ - ୧୯୮୫, ପ୍ରବନ୍ଧ - ପ୍ରେମର ନିୟତି - ୧୯୪୭, କଳାଶକ୍ତି - ୧୯୭୩, **ଆତ୍ମଜୀବନୀ** - ସ୍ରୋତସ୍ୱତୀ (୧ମ, ୨ୟ, ୩ୟ, ୪ର୍ଥ ଖଣ୍ଡ), ଭାଷା ଓ ସଂସ୍କୃତି - ଗଦ୍‌ବା ଭାଷା ପରିଚୟ - ୧୯୫୯, କୁଭୀକନ୍ଧ ଭାଷାତତ୍ତ୍ୱ - ୧୯୫୬, କୁଭୀଲେ । କୁତିନେହି ପଣତୁ - ୧୯୫୬, କନ୍ଧପରଜା ସ୍ତୋତ୍ର ଓ ସଙ୍ଗୀତ - ୧୯୫୭, ସଭରା ଭାଷା - ୧୯୭୮, ଅନୁବାଦ - ଭାରତ ଆଜି ଓ କାଲି- (India Today & Tomorrow), ବୁଝମନା - (ଇଉରୋପୀୟ ସାହିତ୍ୟରୁ ଆଠଟିଗଳ୍ପ), ଯୋଗ ଯୋଗ - (ରବୀନ୍ଦ୍ରନାଥଠାକୁରଙ୍କ ଉପନ୍ୟାସ), ମୋ ବିଶ୍ୱବିଦ୍ୟାଳୟ - (ଗର୍କୀଙ୍କ University), କଥା ଭାରତୀ - (ବଙ୍କିମଚନ୍ଦ୍ର ଚାଟାର୍ଜୀ), ଯୁଦ୍ଧ ଓ ଶାନ୍ତି ୧ମ, ୨ୟ, ୩ୟ - (War & Peace)

# କାହ୍ନୁଚରଣ ମହାନ୍ତି

## (୧୯୦୬ - ୧୯୯୪)



ଓଡ଼ିଆ ଉପନ୍ୟାସ ସାହିତ୍ୟରେ କାହ୍ନୁଚରଣ ମହାନ୍ତି ଜଣେ ପ୍ରଥିତଯଶା ଶିଳ୍ପି । ବଲାଙ୍ଗିର ଜିଲାର ସୋନପୁରଠାରେ ୧୯୦୬ ମସିହା ଅଗଷ୍ଟ ଏଗାର ତାରିଖରେ ସେ ଜନ୍ମ ନେଇଥିଲେ । କଟକ ଜିଲାର ନାଗବାଲି ଗ୍ରାମରେ ତାଙ୍କର ଘର । ପାଠକମହଲରେ ସେ ବେଶ୍ ଆଦୃତ ହୋଇପାରିଛନ୍ତି ପ୍ରତିଭାର କୁଶଳତାରେ । ୧୯୫୮ ମସିହାରେ ସେ କା' ଉପନ୍ୟାସ ପାଇଁ କେନ୍ଦ୍ର ସାହିତ୍ୟଏକାଡେମୀ ପୁରସ୍କାର ଲାଭ କରିଛନ୍ତି ।

ଉପନ୍ୟାସ - ଉତ୍ସବେ ବ୍ୟସନେ - (୧୯୨୩) ଅମୁଦ୍ରିତ ।
ଅରଣା - ୧୯୩୦, ବାଲିରାଜା - ୧୯୩୨, ନିଷ୍ପତ୍ତି - ୧୯୩୨,
ସ୍ୱପ୍ନନା' ସତ୍ୟ - ୧୯୩୩, ଦୁନିଆର ଦାଉ - ୧୯୩୪, ହା'ଅନ୍ନ - ୧୯୩୫
ତଥାସ୍ତୁ - ୧୯୩୬, ପରିଚୟ - ୧୯୩୬, ଓଲଟପାଲଟ - ୧୯୩୭
ପରକୀୟା - ୧୯୩୮, ଉଦଣ୍ଡୀ - ୧୯୩୯, ଅଦେଖାହାତ - ୧୯୪୩
ପ୍ରତୀକ୍ଷା - ୧୯୪୩, ଭଲପାଇବାର ଶେଷକଥା - ୧୯୪୪,
ତୁଣ୍ଡବାଇଦ - ୧୯୪୪, ଏପାରିସେପାରି - ୧୯୪୫, ଶାସ୍ତି - ୧୯୪୬
ବନଗହନରଜଳେ - ୧୯୪୭, ଅନ୍ତରାୟ - ୧୯୪୭, ଅଭିନେତ୍ରୀ - ୧୯୪୭
ଭୁଲିହୁଏନା - ୧୯୪୮, ଝଞ୍ଜା - ୧୯୫୦, ମିଳନରଛନ୍ଦ - ୧୯୫୧,
ଶର୍ବରୀ - ୧୯୫୨, ପରୀ - ୧୯୫୪, କା' - ୧୯୫୬,
ବଜ୍ରବୁହୁ - ୧୯୫୯, ଢେଉଢେଉକା - ୧୯୬୨, ବଗବଗୁଲୀ - ୧୯୬୪,
ଇତିହାସ - ୧୯୬୭, ସ୍ୱପ୍ନା - ୧୯୬୮, ଛୁଟିଲେଘଟ - ୧୯୬୮, ଜରଙ୍ଗରତଳେ - ୧୯୬୯,
ମନ ଜାଣେ ପାପ - ୧୯୬୯, ମନମନ୍ଥନ - ୧୯୭୦, ଅତି ଗୋପନୀୟ - ୧୯୭୦
ଅଙ୍ଗନା - ୧୯୭୧, ମମତାର ମାୟା - ୧୯୭୧
କହିବାକୁ ଲାଜ - ୧୯୭୩, ନିର୍ବିଶଙ୍କ - ୧୯୭୩
ଆଜିନୁହେଁ ଆଉଦିନେ - ୧୯୭୩, କ୍ଷଣେକ୍ଷଣକେଆନ - ୧୯୭୫
ମାୟାବର୍ତ୍ତ - ୧୯୭୮, ସତ୍ୟବତୀ - ୧୯୮୦, କ୍ଷଣିକା - ୧୯୮୦
ଅପା - ୧୯୮୦, ତାରକା - ୧୯୮୧, ତାପସୀ - ୧୯୮୨
ଲଲାଟଲିଖନ୍ - ୧୯୮୩, ମେଲାଣି ମାଗୁଣି - ୧୯୮୩
ପାବନୀ - ୧୯୮୪, ଯକ୍ଷ - ୧୯୮୫



# ଗୋଦାବରୀଶ ମିଶ୍ର

## (୧୮୬୬ - ୧୯୫୬)

ପୁରୀଜିଲାର ବାଣପୁରରେ ୧୮୬୬ ମସିହାରେ ତାଙ୍କର ଜନ୍ମ । ଓଡ଼ିଆସାହିତ୍ୟରେ ସେ ଗାଥା କବିତାର ଜନକ, ସତ୍ୟବାଦୀ ଜନବାଦୀ ବନ୍ଯବିଦ୍ୟାଳୟର ଶିକ୍ଷକ ତଥା ଗୀତିକବି ଭାବରେ ସେ ଆଦୃତ । ୧୯୬୧ ମସିହାରେ ନିଜର ଆତ୍ମଜୀବନୀ ''ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେମୋରସ୍ଥାନ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭକରିଛନ୍ତି ।

କାବ୍ୟ - ଗୀତାୟନ, ଗୀତିଗୁଚ୍ଛ, ଚୟନିକା, କଳିକା, କିଶଳୟ, କୁସୁମ, ଆଲେଖ୍ୟା, ପଦ୍ମାବତୀ, ଧରଣୀଧର, ଦୁଃଖୀଧନ ।

ନାଟକ - ପୁରୁଷୋତ୍ତମଦେବ, ମୁକୁନ୍ଦଦେବ ।

ଉପନ୍ୟାସ - ଘଟାନ୍ତର, ଅଭାଗିନୀ, ଅଠରଶହ ସତର, ନିର୍ବାସିତ

ଗଳ୍ପସଂକଳନ - ପାଣ୍ଡୁମିଶ୍ରେ, ତୋଳାକନ୍ୟା, ସାବତପୁଅ, ପୁଆଣିଘର, ଅନ୍ନଛତ୍ର, ପରିଚୟ, ପାଷାଣର ଭାଷା, ରିକ୍ସାବାଲା ।

ପ୍ରବନ୍ଧ - କୋଣାର୍କ ଦର୍ଶନ, ଖୁରୁଧାରେ ଦୁଇଦିନ, ହିନ୍ଦୁରଦେବ ମନ୍ଦିର, ଶିକ୍ଷା ଓ ତାହାରମୂଲ୍ୟ ।

ଆତ୍ମଜୀବନୀ - ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ ।



# ସଚ୍ଚିଦାନନ୍ଦ ରାଉତରାୟ

## (୧୯୧୬)

ଖୋର୍ଦ୍ଧା ନିକଟସ୍ଥ ଗୁରୁଜଙ୍ଗ ଗ୍ରାମରେ ୧୯୧୩ ମସିହା ମଇମାସ ତେର ତାରିଖରେ କବି ଜନ୍ମ ହୋଇଥିଲେ, ଆଧୁନିକ ଓଡ଼ିଆ କବିତାରେ ସମାଜବାଦୀ ଚେତନା ତଥା ବାମପନ୍ଥୀ ଚିନ୍ତାର ପ୍ରବର୍ତ୍ତକ ଭାବରେ କବିଙ୍କର ପ୍ରତିଭା ଅନସ୍ୱୀକାର୍ଯ୍ୟ । ଏକାଧାରରେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ସମଲୋଚକ, ସମ୍ପାଦକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ୧୯୬୩ ମସିହାରେ ସେ କବିତା '୧୯୬୨' ପାଇଁ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୬୫ ମସିହାରେ ସେ ଜ୍ଞାନପୀଠପୁରସ୍କାର, ୧୯୯୮ ମସିହାରେ ସାହିତ୍ୟ ଭାରତୀ ସମ୍ମନ, ପଦ୍ମଶ୍ରୀ ଉପାଧି, ସମ୍ମାନସୂଚକ ଡକ୍ଟରେଟ ଉପାଧି, ଉତ୍କଳରତ୍ନ ଉପାଧିରେ ଭୂଷିତ ହୋଇଛନ୍ତି ।

**କବିତା ସଂକଳନ** - ପାଥେୟ - ୧୯୩୧, ପଲ୍ଲୀ - ଶ୍ରୀ - ୧୯୪୧ ପାଣ୍ଡୁଲିପି - ୧୯୪୭, ବାଜିରାଉତ - ୧୯୪୧, ଅଭିଯାନ - ୧୯୩୮, ରକ୍ତଶିଖା, ଭାନୁମତୀରଦେଶ - ୧୯୪୯, ହସନ୍ତ - ୧୯୪୮, ସ୍ୱଗତ - ୧୯୫୮, କବିତା - ୧୯୬୨, କବତା - ୧୯୬୯, କବତା - ୧୯୭୧, କବିତା - ୧୯୭୪, କବିତା - ୧୯୮୩, କବିତା - ୧୯୮୫, ୧୯୮୭, ୧୯୯୦ ।

**ଉପନ୍ୟାସ** - ଚିତ୍ରଗ୍ରୀବ (୧୯୩୫) ତଳେମାଟି ଉପରେ ଆକାଶ ସାଗର ତଳର ଢ଼େଉ ।

**ଗଳ୍ପସଙ୍କଳନ** - ମଶାଣିରଫୁଲ, ଛାଇ, ମାଟିରତାଜ, ମଲାକଇଁ, ହାତର କାହାଣୀ, ମାଙ୍କଡ଼ ଓ ଅନ୍ୟାନ୍ୟଗଳ୍ପ, ଆଙ୍ଗୁଠି, ରଜାପୁଅ ।

**ସମାଲୋଚନା** - ସାହିତ୍ୟବିଚାର ଓ ମୂଲ୍ୟବୋଧ, ସାହିତ୍ୟରେ ମୂଲ୍ୟବୋଧ ।

ସମ୍ପାଦକ - 'ଦିଗନ୍ତ' ପତ୍ରିକା



# ନୀଳକଣ୍ଠ ଦାସ

## (୧୮୮୪ - ୧୯୬୭)

ପୁରୀଜିଲାର ଶ୍ରୀରାମଚନ୍ଦ୍ର ପୁର ଶାସନରେ ସେ ୧୮୮୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସତ୍ୟବାଦୀ ସାହିତ୍ୟର ସାଧକ, ସଂସ୍କାର ପ୍ରୟାସୀ, ଜାତୀୟ ଚେତନାର କର୍ଣ୍ଣଧାର ଭାବରେ ସେ ଖ୍ୟାତି ଅର୍ଜନ କରିଛନ୍ତି, କବି ଭାବରେ ସେ ଯେତିକି ଆଦୃତ, ପ୍ରାବନ୍ଧିକ ଭାବରେ ସେ ସେତିକି ସୁନାମ ଅର୍ଜନ କରିଛନ୍ତି । ୧୯୬୪ ମସିହାରେ ଆତ୍ମଜୀବନୀ ପୁସ୍ତକ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**କାବ୍ୟ** - କୋଣାର୍କ, (୧୯୧୯) ଖାରବେଳ, (୧୯୨୧) ଦାସନାୟକ (୧୯୨୩)

ପ୍ରଣୟିନୀ - ୧୯୧୯ ପିଲାଙ୍କ ଗୀତ

**ପ୍ରବନ୍ଧ** - ଆର୍ଯ୍ୟଜୀବନ, ମୋନିଶ, ଆମର ଥିଲା କାରଣ ଥାଇପାରେ, ପୃଥିବୀର ଚାରି ପ୍ରଧାନଧର୍ମ, ନୀତି ଓ ପ୍ରକୃତି, ତନ୍ତ୍ରଉପାସନା

**ସମାଲୋଚନା** - ଓଡ଼ିଆ ସାହିତ୍ୟର କ୍ରମପରିଣାମ - ୧ମ, ୨ୟ, ଖଣ୍ଡ (୧୯୪୮)

ସଂସ୍କୃତ ଓ ସଂସ୍କୃତି, ଓଡ଼ିଆ ଭାଷା ଓ ସାହିତ୍ୟ (୧୯୫୪)

ଗୀତାଭାଷ୍ୟ, ଓଡ଼ିଆ ସଂସ୍କୃତି ଓ ସାହିତ୍ୟ, ଶ୍ରୀମଦ୍ ଭଗବଦ୍ ଗୀତା

**ଶିଶୁ ସାହିତ୍ୟ ଓ ପାଠ୍ୟପୁସ୍ତକ** - ପିଲାଙ୍କ ଭାଗବତ, ପିଲାଙ୍କରାମାୟଣ, ଓଡ଼ିଆବ୍ୟାକରଣ, ପ୍ରାଥମିକ ସାହିତ୍ୟ, ୧ମ, ୨ୟ, ସାହିତ୍ୟସଖା,

**ଇଂରାଜୀପ୍ରବନ୍ଧ** - Control of Education, The cult of Jaganath, Oriya Language and Culture, Philosophical development in Orissa.



# ବୈକୁଣ୍ଠନାଥ ପଟ୍ଟନାୟକ

## (୧୯୦୪ - ୧୯୭୯)

ସବୁଜଯୁଗର ସାହିତ୍ୟ ସାଧନ ଭାବରେ ରହସ୍ୟବାଦୀ ଚିନ୍ତାକୁ ଆଧାରିତ କରି କବି ବୈକୁଣ୍ଠନାଥ ଯଶସ୍ୱୀ ହୋଇଛନ୍ତି । ୧୯୦୪ ମସିହାରେ କଟକର ବିଡ଼ାନାସୀରେ ସେ ଜନ୍ମ ହୋଇଥିଲେ । ୧୯୬୫ ମସିହାରେ ସେ 'ଉତ୍ତରାୟଣ' କାବ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଦ୍ୱାରାପୁରସ୍କୃତ ହୋଇଛନ୍ତି ।

କାବ୍ୟ - ମୁକ୍ତିପଥେ, ଅରୁଣଶ୍ରୀ, କାବ୍ୟସଞ୍ଚୟନ - ୧୯୪୩, ବିଲ୍ୱମଙ୍ଗଳ ୧୯୫୩ ଉତ୍ତରାୟଣ - ୧୯୫୪

ଉପେକ୍ଷିତା - କାବ୍ୟନାଟିକା



# ଗୋଦାବରୀଶ ମାହାପାତ୍ର

## (୧୮୯୮ - ୧୯୬୫)

୧୮୯୮ ମସିହାରେ ପୁରୀଜିଲାର ବାଣପୁରସ୍ଥ କୁମାରଙ୍ଗ ଶାସନରେ କବି ଗୋଦାବରୀଶ ମହାପାତ୍ର ଜନ୍ମ ହୋଇଥିଲେ । ସୃଜନଶୀଳ ପ୍ରତିଭାରେ ସେ ପ୍ରତିଷ୍ଠିତ ହୋଇଥିଲେ । ଶାଣିତ ବ୍ୟଙ୍ଗ, ସ୍ୱାଧୀନ ଚିନ୍ତା, ମାର୍ଜିତ ରୁଚି ସମ୍ପନ୍ନ ବିଚାରଧାରା ହିଁ ତାଙ୍କ ରଚନାର ବୈଶିଷ୍ଟ୍ୟ ଅଟେ । ନିଆଁଖୁଣ୍ଟା (୧୯୩୮) ପତ୍ରିକାର ସମ୍ପାଦକ ଭାବରେ ସେ ଥିଲେ ଆଦୃତ । ଶିଶୁ ସାହିତ୍ୟ ପାଇଁ ଭାରତ ସରକାରଙ୍କ ଦ୍ୱାରା ସମ୍ମାନିତ, 'ବଙ୍କା ଓ ସିଧା' କାବ୍ୟ ପାଇଁ ୧୯୬୬ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, 'ଉଠକଙ୍କାଳ' କାବ୍ୟପାଇଁ ୧୯୬୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

କାବ୍ୟ - ହେ ମୋର କଲମ, ବାଣପୁର, ପ୍ରଭାତକୁସୁମ, ହାଣ୍ଡିଶାଳର ବିପ୍ଳବ, ଯେ ଫୁଲ ଫୁଟିଥିଲା, ପାହାଚତଳର ଘାସ, କଣ୍ଟା ଓ ଫୁଲ, ବଙ୍କା ଓ ସିଧା, ଉଠକଙ୍କାଳ ।

ଗଳ୍ପ - ନୀଳମାଷ୍ଟ୍ରାଣୀ, ଏବେମଧବଞ୍ଚିଛି, ମାଗୁଣିର ଶଗଡ଼, ମୁଁ ଦିନେମନ୍ତ୍ରୀ ଥିଲି, ମଦଦୋକାନରଇତିହାସ, ମାଟିରମାୟା, ଈଶ୍ୱରଙ୍କ ପାଖକୁ ଚିଠି, ଗରିବର ଭଗବାନ, ସବୁକାଳର ଗଳ୍ପ, ରାଜପୁତ କାହାଣୀ, ବନ୍ଦୀମାୟା ।

ଉପନ୍ୟାସ - ରାଜଦ୍ରୋହୀ (୧୯୨୫) ଗ୍ରାମ ପଥେ , ଅସୁନ୍ଦର ପ୍ରେମ, ରକ୍ତପାତ (୧୯୩୦), ପ୍ରେମପଥେ (୧୯୩୨) ବନ୍ଦୀରମାୟା (୧୯୩୪) ବୀରଯୁବକ (୧୯୩୫) ବିଦ୍ରୋହ (୧୯୩୮) ପ୍ରେମର ପ୍ରତିହିଂସା, ଜୀବନରେ ସମ୍ଭବ, ହଠାତ୍ ଭାର୍ଯ୍ୟାଲାଭ ।

ଶିଶୁସାହିତ୍ୟ - ମୋଖେଳସାଥୀ, ଶିଶୁକଥାମାଳା, ସହଜ କଥା, ଠେକୁଆଭାଇ, ଟିକିମହାଭାରତ, ପାଠଚୟନ, ଛବିର କଥା, କୁନୀରହାତୀ ।

ଜୀବନୀ - ଫକୀରମୋହନ, ଗୁରୁଗୋବିନ୍ଦସିଂ, ଦଧିଚୀ, ଅଗସ୍ତି, ନାରଦ, ରାଣା ପ୍ରତାପ, କବିନ୍ଦ୍ରଦେବ, ପ୍ରତାପରୁଦ୍ରଦେବ ।

କ୍ଷୁଦ୍ରନାଟକ - ଶବଯାତ୍ରା    ଅନୁବାଦଗ୍ରନ୍ଥ - ଭକ୍ତିଯୋଗ



# ସୁରେନ୍ଦ୍ର ମହାନ୍ତି

## (୧୯୨୨ - ୧୯୯୦)

କଟକ ଜିଲ୍ଲାର ପୁରୁଷୋତ୍ତମପୁରରେ ୧୯୨୨ ମସିହାରେ ସୁରେନ୍ଦ୍ର ମହାନ୍ତି ଜନ୍ମଗ୍ରହଣ କରିଥିଲେ । ଓଡ଼ିଆ ସାହିତ୍ୟରେ ଜଣେ ଲବ୍‌ଧ ପ୍ରତିଷ୍ଠିତ କଥାକାର ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ୧୯୬୯ ମସିହାରେ 'ନୀଳଶୈଳ' ଉପନ୍ୟାସ ପାଇଁ ସେ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର 'ସବୁଜ ପତ୍ର ଓ ଧୂସର ଗୋଲାପ' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୦ ମସିହାରେ 'କୁଳବୃଦ୍ଧ' ଜୀବନୀ ସାହିତ୍ୟ ପାଇଁ 'ଶାରଳା ପୁରସ୍କାର' ରେ ସମ୍ମାନିତ ହୋଇଛନ୍ତି ।

**ଉପନ୍ୟାସ** - ୧୯୪୩ ମସିହା - ମାର୍ତ୍ତିକେୟ; ୧୯୪୭ - କଲେଜବୟ, ୧୯୫୨ - ସହସ୍ର ଶଯ୍ୟାର ନାୟିକା, ୧୯୬୪ - ଅନ୍ଧଦିଗନ୍ତ, ୧୯୬୮ - ନୀଳଶୈଳ, ୧୯୭୦ - ଶତାବ୍ଦୀରସୂର୍ଯ୍ୟ, ୧୯୭୭ - ହଂସଗୀତି, ୧୯୭୮ - କୁଳବୃଦ୍ଧ, ୧୯୮୦ - ନୀଳାଦ୍ରିବିଜୟ, ୧୯୮୧ -ଅଚଳାୟତନ, ୧୯୮୨ - ନେତିନେତି, କାଳାନ୍ତର, ୧୯୮୫ - କୃଷ୍ଣବେଣୀରେ ସନ୍ଧ୍ୟା, ୧୯୮୭-ଆଜୀବନର ଅଟ୍ଟହାସ, ୧୯୮୮ - ଫଟାମାଟି ।

**ଗଳ୍ପ** - ୧୯୫୦ - ମହାନଗରୀର ରାତ୍ରି, ୧୯୫୧ - କୃଷ୍ଣଚୂଡ଼ା, ୧୯୫୪ - ରୁଟି ଓ ଚନ୍ଦ୍ର, ୧୯୫୫ - ଶେଷ କବତା, ୧୯୫୮ - ସବୁଜପତ୍ର ଓ ଧୂସରଗୋଲାପ, ୧୯୬୨ - ମରାଳର ମୃତ୍ୟୁ ୧୯୭୧ - ଡୁଇସୀମାନ୍ତ, ୧୯୭୩ - ମହାନିର୍ବାଣ, ୧୯୭୩ - ଓଃକାଲ୍‌କାଟା, ୧୯୭୫ - କବି ଓ ନର୍ତ୍ତକୀ, ୧୯୮୧ - ମାଂସର କୋଣାର୍କ, ୧୯୮୩ - ଯଦୁବଂଶ ଓ ଅନ୍ୟାନ୍ୟଗଳ୍ପ, ଅଦିନର ଅତିଥି, ବାସାଂସି ଜିର୍ଣ୍ଣାନି, ନୀଳଜ୍ୟୋସ୍ନା । ୧୯୮୬ - ରାଜଧାନୀ ଓ ଅନ୍ୟାନ୍ୟ ଗଳ୍ପ ।

**ନାଟକ** : ପୃଥ୍ୱୀ ବଲ୍ଲଭ - ୧୯୪୪, ବକ୍‌ସୀଜଗବନ୍ଧୁ, ସେନାପତି, ପ୍ରଦୀପ, ରାଣୀଚନ୍ଦ୍ରିକା, ବାପୁ - ୧୯୭୨, ଛ'ମାଣ ଆଠଗୁଣ୍ଠ ।

**ଭ୍ରମଣ କାହାଣୀ** – ପେକିଂ ଡାଏରୀ - ୧୯୫୯

**ଆତ୍ମ ଜୀବନୀ** – ପଥ ଓ ପୃଥିବୀ - ୧୯୮୬

**ସମାଲୋଚନା** : ୧୯୫୦ - ଫକୀରମୋହନ, ୧୯୫୫ - ଫକୀର ମୋହନ ସମୀକ୍ଷା, ୧୯୫୯ - (ଉତ୍କଳଯୁଗେ ଯୁଗେ (ପ୍ରବନ୍ଧ), ୧୯୬୩ - ଓଡ଼ିଶା ସାହିତ୍ୟର ଆଦିପର୍ବ, ୧୯୬୮ - ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ୧୯୭୮ - ଓଡ଼ିଆ ସାହିତ୍ୟର କ୍ରମ ବିକାଶ, ୧୯୮୨ - Lord Jagannath, ୧୯୮୮ - ଓଡ଼ିଆ ସାହିତ୍ୟର ଉତ୍ତର ମଧ୍ୟପର୍ବ ।

**ପ୍ରବନ୍ଧ** : ଶେଷ ସ୍ୱପ୍ନ - ୧୯୮୯

**ଜୀବନୀ** : ଆମ୍ବେଦକର ଜୀବନୀ - ୧୯୯୦, ମଧୁସୂଦନ ଦାସ ଜୀବନୀ - ୧୯୭୭ ।

**କବିତା ସଂକଳନ** : ଅରୂପ ରୂପ, ଅଦୃଶ୍ୟ ଦୃଶ୍ୟ ।



# ମନୋରଞ୍ଜନ ଦାସ
## (୧୯୨୧)

କଟକ ଜିଲାର ପାଟଣାଠାରେ ମନୋରଞ୍ଜନ ଦାସ ୧୯୨୧ ମସିହାରେ ଜୁଲାଇ ପଚିଶ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ନବନାଟ୍ୟ ଆନ୍ଦୋଳନ ପୁରୋଧା ଭାବରେ, ଆଧୁନିକ ଓଡ଼ିଆ ନାଟକ ଓ ଏକାଙ୍କିକା ସାହିତ୍ୟକୁ ବୈଚିତ୍ର୍ୟମୟ ଓ ଆଧୁନିକତାର ପ୍ରଲେପ ଦେବାରେ ତାଙ୍କର ପ୍ରତିଭା ଅବିସ୍ମରଣୀୟ । ସେ ୧୯୬୪ ମସିହାରେ ଛୋଟନାଟକ (କ୍ଷୁଦ୍ରନାଟକ ସଂକଳନ) ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, 'ଅରଣ୍ୟ ଫସଲ' ନାଟକ ସକାଶେ ୧୯୭୧ ମସିହାରେ କେନ୍ଦ୍ର ସାହିତ୍ୟଏକାଡ଼େମୀ ପୁରସ୍କାର, ୧୯୭୯ ମସିହାରେ ନାଟ୍ୟରଚନା ପାଇଁ ଓଡ଼ିଶାସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୮୧ ମସିହାରେ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୯୦ ମସିହାରେ ନନ୍ଦକାକେଶରୀ ନାଟକ ପାଇଁ ସାରଳାପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ନାଟକ - ଯୌବନ - ୧୯୪୩, ଜନ୍ମମାଟି - ୧୯୪୪, କବିସମ୍ରାଟ ଉପେନ୍ଦ୍ରଭଞ୍ଜ - ୧୯୪୭, ଅଗଷ୍ଟନ' - ୧୯୪୭, ବକ୍ସୀ ଜଗବନ୍ଧୁ - ୧୯୪୯, ଆଗାମୀ - ୧୯୪୯, ବନହଂସୀ - ୧୯୬୬ ।

ଅରଣ୍ୟଫସଲ - ୧୯୬୯, ଅମୃତସ୍ୟପୁତ୍ରଃ - ୧୯୭୦, କାଠଘୋଡ଼ା - ୧୯୭୨, ଊର୍ମି - ୧୯୭୩, ଶବ୍ଦଲିପି - ୧୯୭୫, କ୍ଳାନ୍ତ ପ୍ରଜାପତି - ୧୯୭୮, ବିତର୍କିତ ଅପରାହ୍ନ - ୧୯୮୦, ମହୋଦଧି - ୧୯୮୧, ନନ୍ଦିକାକେଶରୀ - ୧୯୮୪, ତଥାପି ଡାକ୍ତର - ୧୯୮୬ ।

**କ୍ଷୁଦ୍ରନାଟକ ସଂକଳନ** - ନାରୀ - ୧୯୪୮, ଛୋଟନାଟକ - ୧୯୮୫ ମହାସମୁଦ୍ର - ୧୯୬୭, ଅବବାହିକାର ସ୍ୱପ୍ନ - ୧୯୬୯, ନାଟ୍ୟଗୁଚ୍ଛ - ୧୯୮୦, ବିଚିତ୍ର ମନର ନାଟକ, ୧୯୮୧

ଅନୁଦିତ ନାଟକ - ଭଦ୍ରଲୋକ - ୧୯୬୫, ନବାନ୍ନ - ୧୯୭୫ ।



# ମନୋଜ ଦାସ

## (୧୯୩୪)

ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗାଳ୍ପିକ ଭାବରେ ମନୋଜ ଦାସ ଜଣେ ପ୍ରତିଷ୍ଠିତ ପ୍ରତିଭା ରୂପେ ପରିଚିତ ।

୧୯୫୯ ମସିହାରେ 'ଅରଣ୍ୟକ' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, 'କଥା ଓ କାହାଣୀ' ଗଳ୍ପସଂକଳନ ପାଇଁ ୧୯୭୧ ମସିହାରେ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ଝଙ୍କାର ପୁରସ୍କାର ୧୯୮୧ ମସିହାରେ 'ଧୂମ୍ରାଭଦିଗନ୍ତ ଓ ଅନ୍ୟାନ୍ୟକାହାଣୀ' ପାଇଁ ସାରଳାପୁରସ୍କାର, ୧୯୮୭ ମସିହାରେ ପ୍ରବନ୍ଧସଂକଳନ 'କେତେଦିଗନ୍ତ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୨୦୦୦ ମସିହାରେ 'ଅମୃତଫଳ' ଉପନ୍ୟାସ ପାଇଁ ସରସ୍ୱତୀ ସମ୍ମାନରେ ସମ୍ମାନିତ ହୋଇଛନ୍ତି । ୧୯୯୪ ମସିହାରେ ଗଙ୍ଗାଧର ରଥ ଫାଉଣ୍ଡେସନ ପକ୍ଷରୁ 'ସାହିତ୍ୟ ଭାରତୀ' ପୁରସ୍କାର, ୨୦୦୧ରେ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଶ୍ରୀ' ଉପାଧି, ଉତ୍କଳ ସାହିତ୍ୟସମାଜ ତରଫରୁ 'ଉତ୍କଳ ରତ୍ନ' ଉପାଧି ଲାଭକରନ୍ତି ।

**କ୍ଷୁଦ୍ରଗଳ୍ପ** - ସମୁଦ୍ରର କ୍ଷୁଧା - ୧୯୫୦, ଜୀବନରସ୍ୱାଦ - ୧୯୫୨, ବିଷକନ୍ୟାର କାହାଣୀ - ୧୯୫୪, ଅରଣ୍ୟ - ୧୯୬୦, କଥା ଓ କାହାଣୀ - ୧୯୭୧, ଶେଷବସନ୍ତର ଚିଠି - ୧୯୬୬, ଲକ୍ଷ୍ମୀର ଅଭିସାର - ୧୯୭୪, ଆବୁପୁରୁଷ ଓ ଅନ୍ୟାନ୍ୟ କାହାଣୀ - ୧୯୭୫, ଧୂମ୍ରାଭଦିଗନ୍ତ ଓ ଅନ୍ୟାନ୍ୟ କାହାଣୀ - ୧୯୭୩, ମନୋଜପଞ୍ଚବିଂଶତି - ୧୯୮୩, ଭିନ୍ନ ମଣିଷ ଓ ଅନ୍ୟାନ୍ୟକାହାଣୀ - ୧୯୮୯, ଚତୁର୍ଥ ବନ୍ଧୁ ଓ ଅନ୍ୟାନ୍ୟକାହାଣୀ - ୧୯୯୦, ଅବୋଲକରା କାହାଣୀ - ୧୯୯୧, ମନୋଜ ଦାସଙ୍କ ଗଳ୍ପ - ୧୯୯୨ ।

ଶିଶୁଗଳ୍ପ ସଂକଳନ - ଅମରକାହାଣୀ - ୧୯୭୩, ଆଲୋକ ଓ ଆନନ୍ଦର କାହାଣୀ - ୧୯୮୧, କନକ ଉପତ୍ୟକାର କାହାଣୀ - ୧୯୯୪ ଦେଶ ବିଦେଶର ଲୋକକଥା ସିରିଜ୍ ।

ଉପନ୍ୟାସ - ପ୍ରଭଞ୍ଜନ - ୧୯୮୭, ବୁଲ୍‌ଡ଼ୋଜରସ୍ - ୧୯୮୯, ଆକାଶର ଇସାରା - ୧୯୯୭, ଗୋଧୂଳିର ବାଘ, ଅମୃତଫଳ, ତନ୍ଦ୍ରାଲୋକର ପ୍ରହରୀ - ୨୦୦୦, ୧୯୯୫, ୧୯୯୬ ।

କବତା ସଂକଳନ - ଶତାବ୍ଦୀର ଆର୍ତ୍ତନାଦ - ୧୯୪୮, ବିପ୍ଳବୀ - ଫକୀର ମୋହନ ମାଝି - ୧୯୪୯, ପଦଧ୍ୱନି - ୧୯୫୪, ଉପନିବେଶ - ୧୯୫୫, ନନ୍ଦବତୀର ମାଝି - ୧୯୫୪, ତୁମଗାଁ ଓ ଅନ୍ୟାନ୍ୟ କବିତା - ୧୯୯୨, ଚାଷୀ - ମୂଲିଆଗୀତ ।

ଭ୍ରମଣକାହାଣୀ - ଇଣ୍ଡୋନେସିଆ ଅନୁଭୂତି - ୧୯୫୭,

ଦୂରଦୂରାନ୍ତର - ୧୯୭୬, ଅନ୍ତରାଙ୍ଗ ଭାରତ- ୧ଭାଗ, ୨ୟଭାଗ - ୧୯୯୬

ପ୍ରବନ୍ଧ - କେତେ ଦିଗନ୍ତ - (୧ମ ଭାଗ, ୨ୟ ଭାଗ) - ୧୯୮୬, ବିପୁଳାଚ ପୃଥ୍ୱୀ - ୧୯୯୪, ଭାରତ ଐତିହ୍ୟ, ଶତେକ ପ୍ରଶ୍ନର ଉତ୍ତର ୧୯୯୮, ସନ୍ଧାନ ଓ ସଂକେତ - ୧୯୯୯, ଅରଣ୍ୟ ଉଲ୍ଲାସ - ୧୯୯୯ ।

ଇଂରାଜୀଗଳ୍ପ ପୁସ୍ତକ -

A song for sunday and other stories (1965)
Shortstories of Manoj Das (1969), Thecrocodiles Lady - (1975),
Fables of fantagies for Adults (1978),
Man who lifted the mountain and other fantasies (1979)
Vengeance and other stories - (1985), The dusky
Horizon and other stories - (1988), Builders and Fables and
Fantasies for Adults - 1990. Sri Aurobinda.

ସଂକ୍ଷିପ୍ତଜୀବନୀ - ମହାଯୋଗୀ ଶ୍ରୀଅରବିନ୍ଦ - ୧୯୯୭

# ବିନୋଦ ଚନ୍ଦ୍ର ନାୟକ

## (୧୯୧୯)

୧୯୧୯ ମସିହାରେ ସୁନ୍ଦରଗଡ଼ ଜିଲାର ତେଲିପାଲି ରେ ସେ ଜନ୍ମ ଗ୍ରହଣ କରିଥିଲେ । ଆଧୁନିକ ଓଡ଼ିଆ କବିତାରେ ସେ ଜଣେ ସ୍ମରଣୀୟ ପ୍ରତିଭାବନ୍ତ ଶିଳ୍ପୀ । ନୂତନଛନ୍ଦ ତଥା ଦେଶ ବିଦେଶର ଭୌଗୋଳିକ ପ୍ରକୃତି ବର୍ଣ୍ଣନାରେ ତାଙ୍କର କୁଶଳତା ବେଶ୍ ଅନୁଭବ କରାଯାଏ ୧୯୭୦ ମସିହାରେ 'ସରୀସୃପ' କବତାସଂକଳନ ପାଇଁ ସେ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର ରେ ସମ୍ମାନିତ ହୋଇଛନ୍ତି ।

କବିତା ସଙ୍କଳନ - ହୈମନ୍ତୀ - ୧୯୩୩, ଚନ୍ଦ୍ର ଓ ତାରା - ୧୯୫୧ ଇଳାବୃତ୍ତ - ୧୯୬୦, ନନ୍ଦାଦେବୀ - ୧୯୬୨, ସାତତରାରଦ୍ୱୀପ - ୧୯୬୪, ସରୀସୃପ - ୧୯୬୯, ପୋହଳାଦ୍ୱୀପର ଉପକଥା, ନୀଳଚନ୍ଦ୍ରର ଉପତ୍ୟକା ।



# ସୀତାକାନ୍ତ ମହାପାତ୍ର
## (୧୯୩୭)

କେନ୍ଦ୍ରାପଡ଼ା ଜିଲାର କୋରୁଆରେ ୧୯୩୭ ମସିହାରେ ସୀତାକାନ୍ତ ମହାପାତ୍ର ଜନ୍ମ ଗ୍ରହଣ କରିଥିଲେ । ଆଧୁନିକ ଓଡ଼ିଆ କବିତାରେ ଜଣେ ଲବ୍ଧ ପ୍ରତିଷ୍ଠିତ କବି ଭାବରେ ସୀତାକାନ୍ତ ମହାପାତ୍ର କରିଚିତ। ସେ ଐତିହ୍ୟ ତଥା ପରମ୍ପରାର ଉପାସକ, ତାଙ୍କର ଆଧ୍ୟାତ୍ମିକ ଅବବୋଧ ତାଙ୍କ କବିତାର ପାଠକକୁ ଏକ ଭିନ୍ନ ଇଲାକାକୁ ନେଇଯାଏ ।

୧୯୬୭ ମସିହାରେ ସେ 'ଅଷ୍ଟପଦୀ' କବିତା ସଂକଳନ ପାଇଁ ଓଡ଼ିଶାସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୭୪ ମସିହାରେ 'ଶବ୍ଦର ଆକାଶ' କବତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟଏକାଡ଼େମୀ ପୁରସ୍କାର, ୧୯୮୫ ମସିହାରେ 'ଆରଦୃଶ୍ୟ' କବତା ସଂକଳନ ପାଇଁ ଶାରଳା ପୁରସ୍କାର, ୧୯୯୫ ମସିହାରେ ତାଙ୍କର ସାମଗ୍ରିକ କୃତି ନିମନ୍ତେ 'ଜ୍ଞାନପୀଠ' ସମ୍ମାନରେ ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ଦୀପ୍ତି ଓ ଦ୍ୟୁତି - ୧୯୬୩, ଅଷ୍ଟପଦୀ - ୧୯୬୭ ଶବ୍ଦର ଆକାଶ - ୧୯୭୧, ସମୁଦ୍ର - ୧୯୭୭, ଚିତ୍ରନଦୀ - ୧୯୭୯ ଆରଦୃଶ୍ୟ -୧୯୮୧ ସମୟର ଶେଷ ନାମ - ୧୯୮୪ କାହାକୁ ପୁଚ୍ଛିବା କହ - ୧୯୮୭ ଚଢ଼େଇରେ ତୁକି'ଜାଣୁ - ୧୯୯୦, ଫେରିଆସବାର ବେଳ - ୧୯୯୧, ଶ୍ରେଷ୍ଠ କବିତା - ୧୯୯୨, ବର୍ଷା ସକାଳ - ୧୯୯୩, ପଦଚିହ୍ନ - ୧୯୯୬, ମୃତ୍ୟୁର ଅସୀମ ଧୈର୍ଯ୍ୟ ୧୯୯୭ ନିର୍ବାଚିତ କବିତା - ୧୯୯୮, କପଟ ପାଶା - ୨୦୦୦, ଅସରନ୍ତି ପିଲାଦିନ, ମଗଧ ଓ ଅନ୍ୟାନ୍ୟକବିତା (ଅନୁବାଦ) ସୂର୍ଯ୍ୟତୃଷ୍ଣା (ଅନୁବାଦ) ।

**ପ୍ରଦକ୍ଷିଣ - ୨୦୦୨: ପ୍ରବନ୍ଧ ପୁସ୍ତକ** - ଭିନ୍ନ ଆକାଶ ଭିନ୍ନ ଦୀପ୍ତି - ୧୯୭୮, ନିଃସଙ୍ଗମଣିଷ - ୧୯୮୦, ଶବ୍ଦ, ସ୍ୱପ୍ନ ଓ ନିର୍ଭିକତା - ୧୯୯୦, ଅନ୍ଧାରର ଝୋଟି ଚିତ୍ର - ୧୯୯୦, ସମୟର ଆରପାରି - ୧୯୯୮ । ଭ୍ରମଣସାହିତ୍ୟ - 'ଅନେକଶରତ'

ଇଂରାଜୀ ପ୍ରବନ୍ଧ - The curve of meaning - 1974, Bare foot in two reality - 1975, Jeshors of Intimacy - 1976, Bhimobhoi - 1983, Modernisation & Retual - 1986, Tradition & Modern Artist - 1987, Mohabharat & Modern Indian citerature - 1988, Jaganath Dash - 1990. Tribal wall paintings of Orissa - 1991. Tribal life & culture of orissa - 1992



# ଗୁରୁପ୍ରସାଦ ମହାନ୍ତି
## (୧୯୨୪)

କଟକ ଜିଲାର ନାଗବାଲିରେ ଗୁରୁପ୍ରସାଦ ୧୯୨୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ପଚାଶ ଉତ୍ତର ଓଡ଼ିଆ କବିତାରେ ଏକ ବଳିଷ୍ଠ କବି ପ୍ରତିଭା । ସୃଷ୍ଟି ସୀମିତ ମାତ୍ର ସିଦ୍ଧି ଅଧିକ ତଥା T.S.Elliotଙ୍କ କାବ୍ୟାଦର୍ଶ ଦ୍ୱାରା ଅନୁପ୍ରାଣୀତ ହୋଇଛନ୍ତି । ୧୯୭୩ ମସିହାରେ 'ସମୁଦ୍ରସ୍ନାନ' କବିତା ସଙ୍କଳନ ପାଇଁ କେନ୍ଦ୍ରସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ, ୧୯୯୦ ମସିହାରେ 'ପାତାଳପୁରୀର ହାଲଚାଲ' ଭ୍ରମଣକାହାଣୀ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ନୂତନ କବତା - ୧୯୫୫, କାଳପୁରୁଷ - ୧୯୬୦,

ସମୁଦ୍ର ସ୍ନାନ - ୧୯୭୦, ଆଶ୍ଚର୍ଯ୍ୟଅଭିସାର - ୧୯୮୮ ।

ଭ୍ରମଣ କାହାଣୀ - ପାତାଳ ପୁରୀର ହାଲଚାଲ, ଦୂରସୀମାନ୍ତପାରେ ।

ଗଳ୍ପ - ବିଧ୍ୱସ୍ତ କଳିକା

ବିଜ୍ଞାନସମ୍ବନ୍ଧୀୟ - ଭାରତର ବିପନ୍ନ ପ୍ରାଣୀସମୂହ



# ରାଧାମୋହନ ଗଡ଼ନାୟକ

## (୧୯୧୧ - ୨୦୦୦)

ଅନୁଗୁଳର କଳଣ୍ଡାପାଳ ଗ୍ରାମରେ ୧୯୧୧ ମସିହା ଭାଦ୍ରବ କୃଷ୍ଣପକ୍ଷ ତୃତୀୟା ତିଥିରେ ଗଡ଼ନାୟକ ଜନ୍ମ ଗ୍ରହଣ କରିଥିଲେ । ଛନ୍ଦ ରସିକ କବି ଭାବରେ ଓଡ଼ିଆସାହିତ୍ୟରେ ସେ ଜଣେ ସ୍ମରଣୀୟ ପ୍ରତିଭା । ମାନବବାଦୀ ଚେତନାର ରୂପକାର ତଥା ଗୀତିକବିତାର ସୃଷ୍ଟି କ୍ଷେତ୍ରରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ୧୯୭୫ ମସିହାରେ 'ସୂର୍ଯ୍ୟ ଓ ଅନ୍ଧକାର' କାବ୍ୟ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ୧୯୯୦ ମସିହାର ପଦ୍ମଶ୍ରୀ ଉପାଧି, ୧୯୯୩ ମସିହାରେ 'ଅତିବଡ଼ି ଜଗନ୍ନାଥ ଦାସ' ପୁରସ୍କାର, ୧୯୯୭ରେ ଉତ୍କଳରତ୍ନ ଉପାଧି ଓ ଉତ୍କଳ-ବିଶ୍ୱବିଦ୍ୟାଳୟରୁ ଡି.ଲିଟ୍ ଉପାଧିରେ ସମ୍ମାନିତ ହୋଇଥିଲେ ।

କାବ୍ୟ - କାଳିଦାସ - ୧୯୪୦, ବିପ୍ଳବୀ ରାଧାନାଥ - ୧୯୪୪, ଉତ୍କଳିକା - ୧୯୪୫, କାବ୍ୟନାୟିକା - ୧୯୪୫, ନବଜାତକ - ୧୯୪୭, ସ୍ମରଣିକା - ୧୯୫୦, ମୌସୁମୀ - ୧୯୫୧, କୈଶୋରିକା - ୧୯୫୩, ହିମାଚଳ- ୧୯୫୪, ଦୁଇଟି ଡାହାର ଡ଼େଣା - ୧୯୫୪, ଗଡ଼ନାୟକ - ସଞ୍ଚୟନ - ୧୯୫୪, ପଶୁପକ୍ଷୀର କାବ୍ୟ - ୧୯୫୯, ଧୂସର ଭୂମିକା - ୧୯୬୦, କୁମାର ସମ୍ଭବ - ୧୯୬୦, ଶାମୁକାର ସ୍ୱପ୍ନ - ୧୯୬୧, ଗଡ଼ନାୟକ ଗ୍ରନ୍ଥାବଳୀ - ୧୯୬୮, ଦୀପଶିଖା - ୧୯୬୮, ବନରାଜିନୀଳା - ୧୯୬୮, ସୂର୍ଯ୍ୟ ଓ ଅନ୍ଧକାର - ୧୯୭୪, ଗାନ୍ଧୀଗାଥା - ୧୯୭୮, ଅବାଚୀର ତାରା - ୧୯୮୧, ହରାଖଣ୍ଡର ଗାଥା - ୧୯୮୭ ।

ଅନୁବାଦ - ମେଘଦୂତ - ୧୯୫୩, ସୋରାବରୁସ୍ତମ୍ - ୧୯୮୮ ।



# କିଶୋରୀ ଚରଣ ଦାସ

## (୧୯୨୪)

କଟକ ସହରର ଖଟ୍‌ବିନ୍ ସାହିରେ ୧୯୨୪ ମସିହାରେ କିଶୋରୀ ଚରଣ ଦାସ ଜନ୍ମ ହୋଇଥିଲେ । ଓଡ଼ିଆ ଗଳ୍ପ ସାହିତ୍ୟରେ ସେ ଏକ ବିଶିଷ୍ଟ ପ୍ରତିଭା ଅଟନ୍ତି । ଆଧୁନିକ ସଂକଟମୟ ବିଭଙ୍ଗ ଜୀବନର ଅବସାଦ, ସଂଶୟ, ମନନ ଧର୍ମୀ ଆବେଗକୁ ବିଶ୍ଳେଷଣ, କରିବାରେ ତାଙ୍କର ଲେଖନୀ ସାର୍ଥକ ଲଭିଛି । ୧୯୬୯ ମସିହାରେ 'ମଣିହରା' ଗଳ୍ପ ସଂକଳନ ପାଇଁ ସେ ଓଡ଼ିଶାସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୭୪ ମସିହାରେ ପ୍ରଜାତନ୍ତ୍ର 'ଝଙ୍କାର' ପୁରସ୍କାର, ୧୯୭୬ ମସିହାରେ 'ଠାକୁର ଘର' ଗଳ୍ପ ଗ୍ରନ୍ଥ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୬ ମସିହାରେ 'ଭିନ୍ନ ପାଉଁଶ' ଗଳ୍ପ ପୁସ୍ତକ ପାଇଁ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଠାକୁର ଘର, ଭଙ୍ଗାଖେଳଣା, ଲକ୍ଷ ବିହଙ୍ଗ, ମଣିହରା, ଖେଳନା ରଙ୍ଗ, ଘର ବାହୁଡ଼ା, ନାଲି ଗୁଲୁଗୁଲୁ ସାଧବ ବୋହୂ, ଗମନ, ଘରବାହୁଡ଼ା, ପୀତ ଲହରୀ, ଭିନ୍ନ ପାଉଁଶ, ତ୍ରୟୋବିଂଶ ମୃତ୍ୟୁ, ସଞ୍ଜ ଲେଉଟାଣି ।

ଉପନ୍ୟାସ - ସାତଟି ଦିନର ସତୀ (୧୯୯୩) ସକଳ ସନ୍ତାନ, ସ୍ୱର୍ଗସୀମା - ୧୯୯୮ ।

ଭ୍ରମଣ କାହାଣୀ - ଚେନାଏ ପୃଥିବୀ ଚିରୁଡାଏ ଘର ।

ସମାଲୋଚନା - ଲେଖକର ସଂସାର।

# କାଳୀଚରଣ ପଟ୍ଟନାୟକ

## (୧୮୯୭ - ୧୯୭୮)



୧୯୯୭ ମସିହା ଡିସେମ୍ବର ତେଇଶ ତାରିଖରେ କାଳୀ ଚରଣ ପଟ୍ଟନାୟକ ଜନ୍ମ ହୋଇଥିଲେ । ଓଡ଼ିଆ ନାଟ୍ୟ ସାହିତ୍ୟରେ କାଳୀଚରଣଙ୍କ ସ୍ଥାନ ଅଦ୍ୱିତୀୟ । ଅର୍ଦ୍ଧଶତାବ୍ଦୀ ବ୍ୟାପୀ ନିରବଚ୍ଛିନ୍ନ ଭାବରେ ସେ ଓଡ଼ିଆ ନାଟକ କ୍ଷେତ୍ରରେ ବହୁ ପରୀକ୍ଷା-ନିରୀକ୍ଷା କରି ଓଡ଼ିଆ ନାଟକକୁ ନୂତନ ଭାବଚେତନାରେ ଋଦ୍ଧିମନ୍ତ କରିଛନ୍ତି । ତାଙ୍କ ନାଟ୍ୟ ପ୍ରତିଭା ପାଇଁ ପୁରୀର ଗଜପତି ରାମଚନ୍ଦ୍ର ଦେବ ୧୯୨୭ ମସିହାରେ ତାଙ୍କୁ 'କବିଚନ୍ଦ୍ର' ଉପାଧିରେ ଭୂଷିତ କରିଥିଲେ । ୧୯୪୪ ମସିହାରେ ଉତ୍କଳସାହିତ୍ୟ ସମାଜ ତାଙ୍କୁ ନାଟ୍ୟାଚାର୍ଯ୍ୟ ଉପାଧି ପ୍ରଦାନ କରିଥିଲେ । ୧୯୭୫ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ 'ଡକ୍ଟରେଟ୍' ଉପାଧି ଓ ଭାରତ ସରକାର ତାଙ୍କୁ 'ପଦ୍ମଶ୍ରୀ' ଉପାଧି ପ୍ରଦାନ କରିଥିଲେ । ସେ ୧୯୭୧ ମସିହାରେ ନାଟ୍ୟରଚନା ପାଇଁ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୭୭ ମସିହାରେ ଆତ୍ମଜୀବନୀ 'କୁମ୍ଭାରଚକ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭକରିଥିଲେ ।

ଲୀଳା ନାଟକ - କଳଙ୍କ ଭଞ୍ଜନ, ଦାରିଦ୍ର୍ୟ ଭଞ୍ଜନ ମିଳନମାଧୁରୀ, ଶ୍ରୀରାଧା, ବାଂଶରୀର ବିଳାପ, ବନବିହାର କୌତୁକ ଚିନ୍ତାମଣି, ବିଦ୍ୟାବଳୀ, କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ, ଗୀତଗୋବିନ୍ଦ, ପ୍ରୀତିସୁଧାକର, ମାନିନୀ, ଆଖିର ଦେଖା ।

ପୌରାଣିକ ନାଟକ - ଧ୍ରୁବ, ମୃଗୟା, ଶକୁନ୍ତଳା, ହରିଶ୍ଚନ୍ଦ୍ର, ଚକ୍ରୀ, ଦଶଭୁଜା ।

ଐତହାସିକ ନାଟକ - ଅଭିଯାନ (୧୯୪୬), ମାଳତୀ, ରକ୍ତମନ୍ଦାର ।

ଚରିତ୍ର ମୂଳକ ନାଟକ - ଜୟଦେବ, ସାରଳା ଦାସ, ଜଗନ୍ନାଥ ଦାସ ।

ସାମାଜିକ ନାଟକ - ପ୍ରତିଶୋଧ, ଗାର୍ଲସ୍କୁଲ - ୧୯୪୨, ଆହୁତି, ଚୁମ୍ବନ, କମଳା - ୧୯୪୩, ଭାତ - ୧୯୪୪, ବନମାଳା - ୧୯୪୫, ହରଣଚାଳ - ୧୯୪୬, ରକ୍ତମାଟି - ୧୯୪୭, ଫଟାଭୂଇଁ , ସନ୍ଧାନ - ୧୯୫୩, ହୀରାଖଣ୍ଡ - ୧୯୫୩ ।

ଗଳ୍ପସଞ୍ଚୟନ - ବନଫୁଲ          କବିତା ସଞ୍ଚୟନ - ଚନ୍ଦ୍ରିକା, ଫୁଲରେଣୁ

ନାଟ୍ୟବିଚାର - ମଞ୍ଚଧାରା          ଆତ୍ମଜୀବନୀ - କୁମ୍ଭାରଚକ  କାବ୍ୟ ନାଟିକା - ଅନଙ୍ଗ

ଏକାଙ୍କିକା - ପଞ୍ଚରଙ୍ଗ, ଷଡରସ, ସପ୍ତପର୍ଣ୍ଣୀ ଜୀବିତ ତର୍ପଣ, ଯୁଗପୁରୁଷ ।



# ରମାକାନ୍ତ ରଥ

## (୧୯୩୪)

୧୯୩୪ ମସିହାରେ ସେ ପୁରୀଜିଲାରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ଓଡ଼ିଆ କବିତାରେ ବିଶିଷ୍ଟ ପ୍ରୟୋଗବାଦୀ କବି ଭାବରେ ତାଙ୍କର ପ୍ରତିଭା ବିକଶିତ ହୋଇଛି । ଜଗତ ଓ ଜୀବନ ସମ୍ପର୍କରେ ଅନ୍ତରଙ୍ଗ ଆତ୍ମୀୟତାହିଁ ତାଙ୍କ କାବ୍ୟସୃଷ୍ଟିରେ ପ୍ରତିଫଳିତ । ୧୯୭୮ ମସିହାରେ 'ସପ୍ତମଋତୁ' କବିତା ସଂକଳନ ପାଇଁ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୪ ମସିହାରେ କାବ୍ୟ 'ସଚିତ୍ର ଅନ୍ଧାର' ପାଇଁ ଶାରଳା ପୁରସ୍କାର ଓ ୧୯୯୨ ମସିହାରେ 'ଶ୍ରୀରାଧା' କବିତାଗ୍ରନ୍ଥ ପାଇଁ 'ସରସ୍ୱତୀ ସମ୍ମାନ'ରେ ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ -

କେତେ ଦିନର - ୧୯୬୨, ଅନେକ କୋଠରୀ - ୧୯୬୭,

ସନ୍ଦିଗ୍ଧମୃଗୟା - ୧୯୭୧, ସପ୍ତମଋତୁ - ୧୯୭୭,

ସଚିତ୍ର ଅନ୍ଧାର - ୧୯୮୨, ଶ୍ରୀରାଧା - ୧୯୮୫,

ଶ୍ରୀପଳାତକ - ୧୯୯୬ ।

# କୁଞ୍ଜବିହାରୀ ଦାଶ
## (୧୯୧୪ - ୧୯୯୩)

ପୁରୀଜିଲାର ରେଞ୍ଚଶାସନରେ କୁଞ୍ଜବିହାରୀ ଦାଶ ୧୯୧୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଲୋକସାହିତ୍ୟର ଜଣେ ସଫଳ ଗବେଷକ ଭାବରେ ତାଙ୍କର ପ୍ରତିଭାର ପଟାନ୍ତର ନାହିଁ । ଲୋକଗୀତ, ଲୋକଗଳ୍ପର ସଂଗ୍ରାହକ ଭାବରେ ସେ ସଫଳତା ଅର୍ଜନ କରିଛନ୍ତି । ସେ ୧୯୭୯ ମସିହାରେ ଆତ୍ମଜୀବନୀ 'ମୋ କାହାଣୀ' ପାଇଁ କେନ୍ଦ୍ରସାହିତ୍ୟ ଏକାଡେ଼ମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି । ୧୯୬୭ ମସିହାରେ ଭ୍ରମଣ କାହାଣୀ ପାଇଁ ଓଡ଼ିଶା ସହିତ୍ୟ ଏକାଡେ଼ମୀ ପୁରସ୍କାର ଲାଭ କରିଛନ୍ତି ।

କବିତା ସଂକଳନ - ଛିନ୍ନହସ୍ତା - ୧୯୪୦, ପ୍ରଭାତୀ - ୧୯୪୪, ଡୁଡୁମା - ୧୯୪୬, ଚାରଣିକା - ୧୯୪୮, ବାଗ୍ରା - ୧୯୪୮, ବୀରଶ୍ରୀ - ୧୯୪୯, ନବମାଳିକା - ୧୯୫୧, କଙ୍କାଳରଲୁହ - ୧୯୪୯, ମାଟି ଓ ଲାଠି - ୧୯୫୫, କଳକଲ୍ଲୋଳ, ଅପରାହ୍ଣର କେତୋଟି ସ୍ୱର - ୧୯୭୯, ପାଷାଣ ଚରଣ ରକ୍ତ (୧୯୪୫), ସେ ଏକ ଲୋମଶ ନୀଳ ହାତ, ଫସିଲ ଓ ଫସଲ, ନର୍ମଦା, ମୃତ ଅମୃତ, ଚଇତାଳି, ଉଆଁସ କଇଁ, ରାଗିଣୀ, ଲୋକଗୀତ - ପଲ୍ଲୀପୁଷ୍ପ ।

ଉପନ୍ୟାସ - ମଶାଣି ତୁଳସୀ, ମଣିମାଶୁଣିମା ହେଉ, କି କଥା କଲିକତା, ଗ୍ରାମାୟଣ

ଆତ୍ମଜୀବନୀ - ମୋ କାହାଣୀ - ୧୯୭୬ ।

ଜୀବନୀ ମୂଳକ - ଜୀବନୀ ଓ ଜୀବନ - ୧୯୭୭ ।

ଭ୍ରମଣ କାହାଣୀ - ଲଙ୍କାଯାତ୍ରା (୧୯୫୦), ମୋ ସ୍ୱପ୍ନର କାଶ୍ମୀର-୧୯୫୪, ପଥ ପଥିକ - ୧୯୫୮, ଆମେରିକାରୁ ଇଉରୋପ, ଆଫ୍ରିକା - ୧୯୬୮, ଦୁଇ ଦିଗନ୍ତର ଆକାଶ - ୧୯୭୨, ଆମେରିକା ପୁନଶ୍ଚ ।

ସମାଲୋଚନା - ସାହିତ୍ୟ ଓ ସମାଲୋଚନା - ୧୯୮୦, କବି କାହାଣୀ ।

ଗବେଷଣା - ଓଡ଼ିଆ ଲୋକଗୀତ ଓ କାହାଣୀ - (୧୯୫୮)

ରମ୍ୟରଚନା - ଶ୍ରୀମନ୍ତ - ୧୯୬୦

ଗଳ୍ପ - ହସ କାନ୍ଦର ଗଳ୍ପ - ୧୯୭୯

କଥାଟାଏ କହୁଁ - ୧୯୫୬

ସଂକଳନ - ଲୋକବାଣୀ ସଞ୍ଚୟନ - ୧ମ, ୨ୟ, ୩ୟ ଭାଗ ।

ଲୋକଗଳ୍ପ - ସଞ୍ଚୟନ - ୧ମ, ୨ୟ, ୩ୟ

Flok core of Orissa



# ଅନନ୍ତ ପଟ୍ଟନାୟକ

## (୧୯୧୪ - ୧୯୮୭)

ପୁରୀଜିଲ୍ଲାର ବଣାହାଟରେ ଅନନ୍ତ ପଟ୍ଟନାୟକ ୧୯୧୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ଆଧୁନିକ ପ୍ରଗତି ଓଡ଼ିଆ କବିତାରେ ଅନନ୍ତ ପଟ୍ଟନାୟକ ବୈପ୍ଳବିକ କବିଭାବରେ ଆଦୃତି ଲାଭ କରିଛନ୍ତି । ୧୯୬୫ ମସିହାରେ ଗୋର୍କିଙ୍କର 'ମଦର' ଉପନ୍ୟାସକୁ ଓଡ଼ିଆରେ ଅନୁବାଦ କରି ସେ ସୋଭିଏତ୍ ଲ୍ୟାଣ୍ଡ ନେହୁରୁ ପୁରସ୍କାର ଲାଭ କରିଛନ୍ତି । ୧୯୮୦ ମସିହାରେ 'ଅବାନ୍ତର' କାବ୍ୟ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

**କବିତା ସଂକଳନ** - ରକ୍ତଶିଖା, ଉଠଜାଗ ଭୋକି ବନ୍ଦୀ, ଛାଇର ଛିଟା, ଅଲୋଡ଼ା ଲୋଡ଼ା, ଶାନ୍ତି ଶିଖା, ତର୍ପଣ କରେ ଆଜି । କିଞ୍ଚିତ୍, ଅବାନ୍ତର ।

**ଗଳ୍ପ ସଂକଳନ** - ଚଢ଼ା ଉତରା ।

**ନାଟକ** - ରାବଣ, ଚିର ଅନ୍ଧାର ରାତି ।

ଅନୁବାଦ - ମା' (ଗୋର୍କିଙ୍କ - Mother)

ଭାଗ୍ୟରୁ ଖିଏ ।

**ଶିଶୁସାହିତ୍ୟ** - ଛବିଟିଏକୁ ଗପଟିଏ, କଷରା ଘୋଡ଼ା ।



# ଅଖିଳମୋହନ ପଟ୍ଟନାୟକ

## (୧୯୨୭ - ୧୯୯୪)

ଓଡ଼ିଆ ଗଳ୍ପ ସାହିତ୍ୟରେ ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ ଜଣେ ପ୍ରତିଭାବନ୍ତ ଶିଳ୍ପୀ । ଜଣେ ସ୍ୱନାମଧନ୍ୟ ଆଇନଜୀବୀ ଭାବେ ଭାବେ ମଧ୍ୟ ସେ ପରିଚିତ । ସେ ଅବିଭକ୍ତ ପୁରୀଜିଲ୍ଲାର ଖୋର୍ଦ୍ଧା ଠାରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ମଣିଷର ବିଚ୍ଛିନ୍ନତାବୋଧ, ଯୁଗଯନ୍ତ୍ରଣାକୁ ରୂପ ଦେବାରେ ସେ ସଫଳ ରୂପକାର । ୧୯୮୧ ମସିହାରେ ଓଃ ଅନ୍ଧଗଳି ଗଳ୍ପ ସଂକଳନ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି ।

**ଗଳ୍ପ ସଂକଳନ** - ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର, ଓ ଅନ୍ଧଗଳି, ନଦୀର ନାମ ଗଣତନ୍ତ୍ର, ପ୍ରଥମ ଓ ଶେଷ ।

**ଭ୍ରମଣ ସାହିତ୍ୟ** - ପ୍ୟାରିସ ଭ୍ରମଣର ଅନୁଭୂତି - 'ଅନ୍ୟଦେଶ'

# ଗୋପାଳଛୋଟ ରାୟ

## (୧୯୧୬)



ଜଗତସିଂହ ପୁରର ପୁରୁଣାଗଡ଼ରେ ୧୯୧୬ ମସିହାରେ ନାଟ୍ୟକାର ଗୋପାଳ ଛୋଟରାୟ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଆ ନାଟ୍ୟସାହିତ୍ୟରେ ସଫଳ ନାଟ୍ୟକାର ଭାବରେ ଗୋପାଳ ଛୋଟରାୟ ପ୍ରତିଭା ଅନନ୍ୟ, ଅସାଧାରଣ । ୧୯୮୨ ମସିହାରେ ହାସ୍ୟରସର ନାଟକ ପାଇଁ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଥିଲେ । ୧୯୭୦ ମସିହାରେ ଏକାଙ୍କିକା 'ତିନୋଟି ଅପେରା ଏକତ୍ର' ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୭୬ ମସିହାରେ ନାଟ୍ୟରଚନା ପାଇଁ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର ଲାଭ କରିଥିଲେ । ସେ ୨୦୦୦ ମସିହାରେ ନାଟ୍ୟରଚନା ନିମନ୍ତେ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

ନାଟକ - ସହଧର୍ମିଣୀ - ୧୯୪୧, ଫେରିଆ - ୧୯୪୭, ଭରସା - ୧୯୫୨, ପର କଲମ - ୧୯୫୪, ଶଙ୍ଖା ସିନ୍ଦୂର - ୧୯୫୫, ଅର୍ଦ୍ଧାଙ୍ଗିନୀ - ୧୯୫୬, ଝଞ୍ଜା ଉପନ୍ୟାସର ନାଟ୍ୟରୂପ - ୧୯୫୬, ଅମଡାବାଟ ଉପନ୍ୟାସର ନାଟ୍ୟରୂପ - ୧୯୫୮, ଅଭାଗିନୀର ସ୍ୱର୍ଗ - ୧୯୫୯, ଜନଶତ୍ରୁ - ୧୯୫୮, ପଦ୍ମାଳୟା - ୧୯୭୯, ଉପେନ୍ଦ୍ର କୁମାର ଦାସଙ୍କ ମଲାଜହ୍ନର ନାଟ୍ୟରୂପ- ୧୯୬୦, ମହତାବଙ୍କ ପ୍ରତିଭା ଉପନ୍ୟାସର ନାଟ୍ୟରୂପ - ୧୯୬୦, ଘଟକ - ୧୯୬୧, ସାଧନା - ୧୯୬୪, ଗୋପୀ ମହାନ୍ତିଙ୍କ ପରଜା, ହରିଜନ ଉପନ୍ୟାସର ନାଟ୍ୟରୂପ, ମୁକ୍ତାଗଡ଼ର କ୍ଷୁଧାର ନାଟ୍ୟରୂପ ବିଭୂତି ପଟ୍ଟନାୟକଙ୍କ ବଧୂ ନିରୂପମା, ଫକୀରମୋହନଙ୍କ ଛ'ମାଣ ଆଠଗୁଣ୍ଠର ନାଟ୍ୟରୂପ, କାହ୍ନୁ ଚରଣଙ୍କ କା' ଉପନ୍ୟାସର ନାଟ୍ୟରୂପ, ନଷ୍ଟଉର୍ବଶୀ, ଅର୍ଦ୍ଧାଙ୍ଗିନୀ, ବୋଲେ ହୁଁଟି ।

ଏକାଙ୍କିକା - ଶାଖା ପ୍ରଶାଖା, ଶ୍ରୀ ହରିଙ୍କ ସଂସାର ।

ଗୀତିନାଟ୍ୟ - ଶ୍ରୀଗଣେଷ, ମହିଷାମର୍ଦ୍ଦିନୀ, ଜନ୍ମାଷ୍ଟମୀ, ଶ୍ରୀଜଗନ୍ନାଥ, ନ ପାହୁରାତି ନ ମରୁପତି, ରାମାୟଣ, ପଥିକ ବନ୍ଧୁ, ନୂଆବୋଉ ।

ବେତାରନାଟକ - ଦଳବେହେରା, ସାମଲ ଝିଅ, ଗାଁ ପରିମଳ, ଦିଗନ୍ତ, ଚଲାବଉଦ, ଆଉକେତେ ଦିନ, ବସୁନ୍ଧରା, ଭୁଲ କାହାର ପାଞ୍ଚଜନ୍ୟ, ଉତ୍ତରା, ଦୃଷ୍ଟିପାତ, ପ୍ରତିଶୋଧ, ଅଶୋକାଷ୍ଟମୀ, ଯଦି ହୁଏତ କିନ୍ତୁ, ବେଣୀ ବନ୍ଧନ, ତଥାପି ବଦଳି, ମକଦ୍ଦମା, ମହଲା ମଧ୍ୟବୟସ୍କା, ପ୍ରଜାପତି ନିର୍ବନ୍ଧ ଅଫିସ, ଅଥନାସିକା ସମ୍ବାଦ, ଡାକ୍ତର ବାବୁ, ଅଠରଶ'ସତାବନ, ନନ୍ଦିକା, ପାଇକବିଦ୍ରୋହ ହର୍ଷବର୍ଦ୍ଧନ, ସେତୁବନ୍ଧ, ରାବଣ, ଅନ୍ତିମଦର୍ଶନ, ଗାନ୍ଧାରୀ, ଶୁକଉବାଚ, ଉର୍ବଶୀ, ଭୀଷ୍ମ ପ୍ରତିଜ୍ଞା, ପୂରାପୂରି ପାରିବାରିକ ।



# ଡକ୍ଟର ହରେକୃଷ୍ଣ ମହତାବ

## (୧୮୯୯ - ୧୯୮୭)

ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ ୧୮୯୯ ମସିହା ନଭେମ୍ବର ୨୧ ତାରିଖରେ କଟକ ଜିଲ୍ଲାର ଅଗରେଶ୍ୱର ଠାରେ ଜନ୍ମଗ୍ରହଣ କରିଥିଲେ କିନ୍ତୁ ପ୍ରତିପାଳିତ ହୋଇଥିଲେ ତାଙ୍କ ଅଜାଙ୍କ ଘରେ ଅଗରପଡ଼ାରେ । ଏକଧାରାରେ ସେ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ଐତିହାସିକ, ଗବେଷକ, ସାମ୍ବାଦିକ, ସଂପାଦକ, ଜନନାୟକ । ଓଡ଼ିଶା ଜାତିର ସେ ଥିଲେ କର୍ଣ୍ଣଧାର । ତେଣୁ ତାଙ୍କୁ ଉତ୍କଳ କେଶରୀ ଓ ବୋଲି କୁହାଯାଏ । ରାଜନୀତିଜ୍ଞ ତଥା ଦେଶ ସେବକ ଭାବରେ ସେ ଖ୍ୟାତି ଅର୍ଜନ କରିଛନ୍ତି । ସେ ୧୯୮୩ ମସିହାରେ 'ଗାଁମଜଲିସ୍' ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

ଉପନ୍ୟାସ - ନୂତନ ଧର୍ମ, ଟାଉଟର, ଅବ୍ୟାପାର, ପ୍ରତିଭା, ତୃତୀୟ ପର୍ବ, ୧୯୫୭,

ଗଳ୍ପସଂକଳନ - ସ୍ୱର୍ଗରେ ଇମରଜେନ୍ସି (୧୯୬୭)

କାବ୍ୟ - ଚାରିଚକ୍ଷୁ, ପଲାସୀ ଅବସାନେ, ଶେଷ ଅଶ୍ରୁ, ନନ୍ଦିକା, ଲଳିତା, ରାଜରାଣୀ, ଛାୟା ପଥର ଯାତ୍ରୀ କାବ୍ୟ ନାଟିକା - ଆତ୍ମଦାନ । ଆତ୍ମଜୀବନୀ - ସାଧନାର ପଥେ ।

ଏକାଙ୍କିକା - ରୂପାନ୍ତର, ଇତିହାସର ପରିହାସ, ଗନ୍ତାଘର ମୁକ୍ତି ଓ ମୁକ୍ତ, ପ୍ରବଞ୍ଚନା, ଗୁପ୍ତ ପ୍ରଣୟ, ଉଭୋରଭୋର ଶମ୍ବୁକର ତପସ୍ୟା, ଅନ୍ଧଯୁଗ, ଯୁଗସଂକେତ ।

ଇତିହାସ - ଓଡ଼ିଶାଇତିହାସ ୧ମ, ୨ୟ ଭାଗ ।

ପ୍ରବନ୍ଧ ଓ ଅନ୍ୟାନ୍ୟ ରଚନା - ସାହିତ୍ୟ ଆଲୋଚନା, ଗାନ୍ଧୀ ଧର୍ମ, ଅହିଂସାର ଉପଯୋଗ, ଭାରତୀୟ ସଂସ୍କୃତି, ଗୀତା ଓ ଜନତା, ଦଶବର୍ଷର ଓଡ଼ିଶା, ଗାନ୍ଧିଜୀ ଓ ଓଡ଼ିଶା, ଆରବସାଗରରୁ ଚିଲିକା । 'ଗାଁ ମଜଲିସ' - ୧ମ, ୨ୟ, ୩ୟ, ୪ର୍ଥ ଖଣ୍ଡ ।

ଶିଶୁ ସାହିତ୍ୟ - ବିଷ୍ଣୁପୁରର ଭିତିରିକଥା, ଗଣେଶଙ୍କ ପାଠପଢ଼ା ।



# ମହାପାତ୍ର ନୀଳମଣି ସାହୁ

## (୧୯୨୬)

୧୯୨୬ ମସିହାରେ କଟକର ନିଆଳି ଠାରେ ନୀଳମଣି ସାହୁ ଜନ୍ମ ହୋଇଥିଲେ । ସ୍ୱାଧୀନତା ପରବର୍ତ୍ତୀ ସମୟର ଅନ୍ୟତମ ବିଶିଷ୍ଟ କଥାକାର ଭାବରେ ନୀଳମଣିସାହୁ ଆଦୃତ । ୧୯୭୯ ମସିହାରେ ସେ 'ଆକାଶ ପାତାଳ' ଗଳ୍ପ ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୩ ମସିହାରେ 'ଅଭିଶପ୍ତ ଗନ୍ଧର୍ବ' ଗଳ୍ପ ସଂକଳନ ପାଇଁ ଶାରଳା ପୁରସ୍କାର ଓ ସେହି ପୁସ୍ତକ ପାଇଁ ୧୯୮୪ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଗଳ୍ପ ସଂକଳନ** - ପ୍ରେମ ତ୍ରିଭୁଜ-୧୯୫୨, ମିଛ ବାଘ-୧୯୫୫, ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ - ୧୯୫୭, ଗଞ୍ଜେଇ ଓ ଗବେଷଣା - ୧୯୬୧, ରାନୁ ଅପାଠାରୁ ପୁଷି ପର୍ଯ୍ୟନ୍ତ ପୁନର୍ବାର ପ୍ରକାଶିତ -୧୯୬୫ ଅନ୍ଧରାତିର ସୂର୍ଯ୍ୟ, ଅନ୍ୟରୂପ ରୂପାନ୍ତର, ଆକାଶ ପାତାଳ, ଅଭିଶପ୍ତ ଗନ୍ଧର୍ବ, ପିଙ୍ଗଳା ସେ ଅନ୍ୟଜଣେ, କପୋତ ପକ୍ଷୀ ଗୁରୁମୋର, ସୁମିତ୍ରାର ହସ, ବିଷ୍ଣୁ ମାୟା, ମିଛ ବାଘ, ପାପ ଓ ମୁକ୍ତି, ସେକାଳ ପଖାଳ, ବୃନ୍ଦାବନର ଶେଷ ଧୂପ, ଯାଦେବୀ ସମ ଗୃହେଷ୍ଣୁ, ଗଳ୍ପ ବିଚିତ୍ରା, ନିବେଦିତାର ନୈଶାଭିସାର ।

**ଉପନ୍ୟାସ** - ଧରା ଓ ଧାରା, ତାମସୀ ରାଧା, ହଂସ ମିଥୁନ ।

**ସମାଲୋଚନା** - ସାହିତ୍ୟର କଥା ଓ ରମ୍ୟରଚନା ସାହିତ୍ୟର ପାରାବାର ।

# ରାଜେନ୍ଦ୍ର କିଶୋର ପଣ୍ଡା

## (୧୯୪୪)



୧୯୪୪ ମସିହାରେ ସମ୍ବଲପୁରର ବାଟଲଗା ସେ କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଜନ୍ମ । ଆଧୁନିକ ଓଡ଼ିଆ କବିତାରେ ସେ ଜଣେ ଅନନ୍ୟ ପ୍ରତିଭା । ୧୯୮୫ ମସିହାରେ ସେ 'ଶୈଳକଳ୍ପ' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୫ ମସିହାରେ ସେ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ଆଙ୍ଗିକ ତଥା ଆତ୍ମିକରେ ଆଧୁନିକ ଓଡ଼ିଆ କବିତାରେ ବହୁ ପରୀକ୍ଷା ନିରୀକ୍ଷାରେ କବିଙ୍କ ପାରଦର୍ଶିତା ବେଶ୍ ଅନୁଭବକରାଯାଏ ।

କବିତା ସଂକଳନ- ଗୌଣ ଦେବତା, ଅନବତାର ଓ ଅନ୍ୟ ଅନ୍ୟ, ନିଜ ପାଇଁ ନାନାବାୟା, ଘୃଣାକ୍ଷର, ଶତଦ୍ରୁ ଅନେକ, ଶୈଳକଳ୍ପ, ନିଜପାଇଁ ନାନା ବାୟା, ଚୌକାଠରେ ଚିରକାଳ ଅନ୍ୟା, ବହୁବ୍ରିହୀ ।

# ସୌଭାଗ୍ୟ କୁମାର ମିଶ୍ର

## (୧୯୪୧)



ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତାରେ ଜଣେ ସୁନାମ ଅର୍ଜନ କରିଥିବା କବି ଭାବରେ ସୌଭାଗ୍ୟ କୁମାର ମିଶ୍ର ପରିଚିତ । ଆଧୁନିକ ମଣିଷର ନିଃସଙ୍ଗତା, ଜ୍ୱାଳା ଜର୍ଜରିତ ସଂକଟମୟ ଜୀବନ ତଥା ଦାର୍ଶନିକ ଭାବବୋଧରେ ନୂତନ ରୂପେ ପ୍ରତୀକ, ଚିତ୍ରକଳ୍ପ ପ୍ରୟୋଗରେ କବି ସିଦ୍ଧହସ୍ତ । ୧୯୭୫ ମସିହାରେ 'ଝଙ୍କାର' ପୁରସ୍କାର, ୧୯୭୯ ମସିହାରେ 'ଅନ୍ଧ ମହୁମାଛି' କାବ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୬ ମସିହାରେ 'ଦ୍ୱାସୁପର୍ଣ୍ଣା' କବିତା ଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ଆତ୍ମନେପଦୀ - ୧୯୬୫, ମଧ୍ୟପଦଲୋପୀ - ୧୯୭୧, ନଈପହଁରା - ୧୯୭୩, ଅନ୍ଧମହୁମାଛି - ୧୯୭୭, ବଜ୍ରଯାନ, ଦ୍ୱାସୁପର୍ଣ୍ଣା, ସ୍ମୃତିର ସହର, ମଣିକର୍ଣ୍ଣିକା,

ଅନୂଦିତ କବିତା ସଂକଳନ - Counter Measures Down Points

ଅନୁବାଦ - ଘୂଣପୋକ, ଦୁର୍ଗ, ତରଙ୍ଗର ସ୍ୱର ।



# ନିତ୍ୟାନନ୍ଦ ମହାପାତ୍ର

## (୧୯୧୨)

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ସୁଯୋଗ୍ୟ ସନ୍ତାନ ରୂପେ ନିତ୍ୟାନନ୍ଦ ମହାପାତ୍ର ଭଦ୍ରଖଠାରେ ୧୯୧୨ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଉଗ୍ର ଜାତୀୟତାବାଦୀ ପଦ୍ୟ ରଚନା 'ସ୍ୱରାଜ ପାଲା' ୧୯୩୦, ଗଳ୍ପ: ମାଉସୀ - ୧୯୩୪, ବ୍ରିଟିଶ୍ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । 'ଡଗର' ପତ୍ରିକାର ସଂପାଦକ କଥା ବଳିଷ୍ଠ କଥାକାର ଭାବରେ ସେ ସୁନାମ ଅର୍ଜନ କରିଥିଲେ । ୧୯୮୦ ମସିହାରେ 'ନାହିଁ ତିଷ୍ଠାମି ବୈକୁଣ୍ଠେ' ଜୀବନଗ୍ରନ୍ଥ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୭ ମସିହାରେ 'ଘରଡ଼ିହ' ଉପନ୍ୟାସ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୯ ମସିହାରେ ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ସ୍ୱରାଜ୍ୟ ପାଲା, ପଞ୍ଚଜନ୍ୟ, କାଳରଡ଼ି, ମରମ ।

**ଉପନ୍ୟାସ** - ଭଙ୍ଗାହାଡ଼, ଭୁଲ, ହିଡ଼ମାଟି, ଘରଡ଼ିହ, ଜଳନ୍ତା ନିଆଁ, ଜୀଅନ୍ତା ମଣିଷ, ଜୀବନର ଲକ୍ଷ୍ୟ, ସୁଖର ସନ୍ଧାନେ, ପୀରତି ପଥ ଖସଡ଼ା, ନାହିଁ ତିଷ୍ଠାମି ବୈକୁଣ୍ଠେ ।

**ଗଳ୍ପସଂକଳନ** - ଏଗାରଟା, କ୍ଷଣିକା, ଧଳା ଗାର କଳା ଗାର, ରାଜ କନ୍ୟା ।

**ରମ୍ୟରଚନା** - ପତ୍ର ଓ ପ୍ରତିମା

**ନାଟକ** - ହରିଜନ ମନ୍ଦିର ପ୍ରବେଶ, ସଞ୍ଜୀବନୀ, ଯୁଗଧର୍ମ, ଯୁଗାନ୍ତର ।

ପ୍ରବନ୍ଧ - ଭାରତୀୟ ଦର୍ଶନ ।

ଜୀବନୀ - ଶ୍ରୀ ଶ୍ରୀ ରାମଦାସ ବାବାଜୀ, ଭାରତ ଭାଗ୍ୟ ବିଧାତା ।

ଅନୁଦିତ ଗ୍ରନ୍ଥ - କମ୍ବନ ରାମାୟଣ, ରମଣ ମହର୍ଷି, ସ୍ୱରାଜ୍ୟ ସଂହିତା ।



# ଭାନୁଜୀ ରାଓ

## (୧୯୨୬)

ଆଧୁନିକ ଓଡ଼ିଆ କବିତାରେ ଭାନୁଜୀ ରାଓ ଏକ ସ୍ୱତନ୍ତ୍ର ଶିଳ୍ପୀ । ୧୯୨୫ ମସିହା ନଭେମ୍ବର ୩ ତାରିଖରେ କଟକରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ କବିତାରେ ରୋମାଣ୍ଟିକ ଚିନ୍ତା, ବାସ୍ତବବାଦୀ ଚେତନା, ଇନ୍ଦ୍ରିୟୋତ୍ତର ଭାବର ସମନ୍ୱୟ ହୋଇଛି । ସେ ୧୯୮୯ ମସିହାରେ 'ନଈ ଆରପାରି' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୬ ମସିହାରେ 'ଚନ୍ଦନ ବନରେ ଏକା' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

କବିତା ସଂକଳନ - ଚନ୍ଦ ବନରେ ଏକା (୧୯୯୪) ଦର୍ପଣ ଆଗରେ (୧୯୯୫) ନୂତନ କବତା, ବିଷାଦ ଏକ ଋତୁ, ନୈଶ ଶବ୍ଦର ମୁହଁ, ନଈ ଆରପାରି, ଏକା ଏବଂ ଏକା ଏକା, ସ୍ୱପ୍ନର ପ୍ରଚ୍ଛଦ, ରକ୍ତ ମାଂସର କବିତା,

ହଳଦୀ ପତ୍ରର ବାସ୍ନା - ୧୯୯୮

ଜହ୍ନର ରକ୍ତଧଳା - ୧୯୯୮, ଶବ୍ଦ ସଂଗେ ଶୃଙ୍ଗାର ୨୦୦୦,

ଅନ୍ତର୍ଗତ ସୁଖ ଦୁଃଖ, ୨୦୦, ଧୂସର ବର୍ଣ୍ଣମାଳା



# ସୌରୀନ୍ଦ୍ର ବାରିକ

## (୧୯୩୮)

ଆଧୁନିକ ଓଡ଼ିଆ କବିତାରେ ଜଣେ ବିଶିଷ୍ଟ କବି ଭାବରେ ତଥା ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଅନ୍ୟତମ ପ୍ରତିଭା ରୂପେ ଅଧ୍ୟାପକ ସୌରୀନ୍ଦ୍ର ବାରିକ ପରିଚିତ । କବିତା ସଂକଳନ 'ସାମାନ୍ୟ କଥନ' ପାଇଁ ୧୯୭୦ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୭ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୮ ମସିହାରେ ସେ 'ଆକାଶ ପରି ନିବିଡ଼' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ସାମାନ୍ୟ କଥନ, ଉପଭାରତ, ଆକାଶପରି ନିବିଡ଼, ଗୁଣ୍ଣୁଗୁଣ୍ଣୁ ଚିତ୍ରପଟ, ଲୁହଠୁ ବି' ଅନ୍ତରଙ୍ଗ, ଅନୁଭାରତ, ଆମେ ଦୁହେଁ, ଚହଲା ଛାଇରେ ଘଡ଼ିଏ ।

**ସମାଲୋଚନା** - ଆନ୍ୱେଷଣର ସ୍ୱର, ଚେତନାର ଚୌହଦୀ, ସତ୍ୟର କୁହୁକ, ବାମନର ପାଦ, ଶବ୍ଦସବୁ ସରିଗଲାପରେ, ଉଦାର ନରସିଂହ ।



# ବୀଣାପାଣି ମହାନ୍ତି

## (୧୯୩୫)

ଷାଠିଏ ଉତ୍ତର ଗାଳ୍ପିକା ଭାବରେ ବୀଣାପାଣି ମହାନ୍ତି ପରିଚିତ । କବି, ଔପନ୍ୟାସିକା, ନାଟ୍ୟକାର ତଥା ଅନୁବାଦିକା ଭାବରେ ତାଙ୍କର ପ୍ରତିଭା ଅନନ୍ୟ, ଅସାଧାରଣ ଅଟେ । 'କସ୍ତୁରୀ ମୃଗ ଓ ସବୁଜ ଅରଣ୍ୟ' ଗଳ୍ପ ପୁସ୍ତକ 'ପାଟଦେଈ' ପାଇଁ ୧୯୯୦ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ରେ ସମ୍ମାନିତା ହୋଇଛନ୍ତି । ପ୍ରଜାତନ୍ତ୍ର ପ୍ରଚାର ସମିତିର 'ବିଷୁବ ପୁରସ୍କାର'ରେ ମଧ ସେ ସମ୍ମାନୀତା ।

ଉପନ୍ୟାସ - 'ସୀତାର ଶୋଣିତ' - ୧୯୬୪ - ଆସନ୍ତାକାଲିରେ ଧାରାବାହିକ ଭାବରେ ପ୍ରକାଶିତ ।

'କୁନୀ - କୁନ୍ତଳା - ଶକୁନ୍ତଳା' - ୧୯୮୯

ଏକାଙ୍କିକା - 'କ୍ରାନ୍ତି'

କବତା ସଂକଳନ - ଆସିବରବେଳ - ୧୮୯୮

ଗଳ୍ପ ସଂକଳନ - ନବତରଂଗ - ୧୯୫୩, ପାନ୍ଥଶାଳା ଓ ଉଲ୍କକରବୀ - ୧୯୬୫, କସ୍ତୁରୀମୃଗ ଓ ସବୁଜ ଅରଣ୍ୟ - ୧୯୬୬, ତଟିନୀର ତୃଷ୍ଣା - ୧୯୭୨

ସାୟାହ୍ନର ସ୍ୱର - ୧୯୭୩, ଅନ୍ଧକାରର ଛାଇ - ୧୯୭୬ କାଳାନ୍ତର - ୧୯୭୭, ଆରୋହଣ - ୧୯୭୮, ମଧ୍ୟାନ୍ତର - ୧୯୭୯, ଇଣ୍ଟରଭିଉ - ୧୯୮୧, ବସ୍ତ୍ର ହରଣ - ୧୯୮୦, ଅନ୍ୟଅରଣ୍ୟ - ୧୯୮୧ ଦୃଶ୍ୟାନ୍ତର - ୧୯୮୪, ଚରିତ୍ର ହସୁଛି - ୧୯୮୬, ଖେଳଣା - ୧୯୮୩, ପାଟଦେଈ - ୧୯୮୭, ତୃତୀୟପାଦ - ୧୯୮୯, ବହ୍ନିବଳୟ - ୧୯୯୦, ଜନ୍ମାନ୍ତର - ୧୯୯୧, ଶକୁନିର ଛକା - ୧୯୯୨, ଅଶ୍ରୁ ଅନଳ - ୧୯୯୨, ଏକାକୀ ପରାଶର - ୧୯୯୫, ଅଭିନେତ୍ରୀ - ୧୯୯୭, ଖେଳ ଚାଲିଛି - ୧୯୯୮, ପାଚେରୀ ସେପଟ ନଈ ।



# ଜଗନ୍ନାଥ ପ୍ରସାଦ ଦାସ

## (୧୯୩୬)

ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭା ରୂପେ ଜଗନ୍ନାଥ ପ୍ରସାଦ ଦାସ ପରିଚିତ । ପୁରୀ ଜିଲାର ବାଣପୁରରେ ତାଙ୍କର ୧୯୩୫ ମସିହାରେ ଜନ୍ମ । ପ୍ରଥମତଃ ଜଣେ କବି, ଏହି କବିମାନସ ଗଳ୍ପ ତଥା ନାଟ୍ୟ ମାନସକୁ ଉନ୍ନୀତ ହୋଇଛି । ୧୯୭୮ ମସିହାରେ ସେ 'ଝଙ୍କାର' ପୁରସ୍କାର, ୧୯୮୧ ମସିହାରେ 'ଯେ ଯାହାର ନିର୍ଜନତା' କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୧ ମସିହାରେ 'ଆହ୍ନିକ' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୮ ମସିହାରେ ଗଳ୍ପ ପୁସ୍ତକ 'ପ୍ରିୟ ବିଦୂଷକ' ପାଇଁ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ସ୍ତବକ, ପ୍ରଥମପୁରୁଷ - ୧୯୭୧, ଅନ୍ୟସବୁ ମୃତ୍ୟୁ, ଯେ ଯାହାର ନିର୍ଜନତା, ଯାତ୍ରାର ପ୍ରଥମ ପାଦ, ଅନ୍ୟଦେଶ ଭିନ୍ନ ସମୟ, ପ୍ରେମ କବିତା, ପୂର୍ବାପର, ଆହ୍ନିକ, ସଚରାଚର, ସ୍ଥିରଚିତ୍ର, ସ୍ମୃତିର ସହର, ପରିକ୍ରମା ।

ନାଟକ - ସୂର୍ଯ୍ୟାସ୍ତ ପୂର୍ବରୁ - ୧୯୭୭, ଅସଙ୍ଗତ ନାଟକ, ସବାଶେଷ ଲୋକ - ୧୯୭୭, ସୁନ୍ଦର ଦାସ, ରଙ୍ଗଲିପି ।

ଏକାଙ୍କିକା ଗୁଚ୍ଛ - ପୂର୍ବରାଗ ।

ଗଳ୍ପ - ପ୍ରିୟ ବିଦୂଷକ, ଦିନଚର୍ଯ୍ୟା, ଭବନାଥ ଓ ଅନ୍ୟମାନେ ଆମେ ଯେଉଁ ମାନେ, ସାକ୍ଷାତକାର ।

ଉପନ୍ୟାସ - ଦେଶକାଳପାତ୍ର

ଚିତ୍ରପୁସ୍ତକ - Puri paintings



# ରବି ପଟ୍ଟନାୟକ

## (୧୯୩୬ - ୧୯୯୧)

ଓଡ଼ିଆ ଗଳ୍ପ ସାହିତ୍ୟରେ ରବିପଟ୍ଟନାୟକ ହେଉଛନ୍ତି ଜଣେ ବିଶିଷ୍ଟ ପ୍ରତିଭା । ୧୯୩୬ ମସିହା ମୟୂରଭଞ୍ଜ ଜିଲାର ରାଇରଙ୍ଗପୁରଠାରେ ତାଙ୍କର ଜନ୍ମ । ଜୀବନର ଅସହାୟତା, ବିଫଳତା ସତ୍ତ୍ୱେ ଏକ ଶାଶ୍ୱତ ସତ୍ୟକୁ ଅନୁସନ୍ଧାନ କରି ଗଳ୍ପମାନଙ୍କରେ ଯୁଗ ମାନବର ଅନୁସନ୍ଧିସାଗୁଡ଼ିକୁ ରୂପାୟିତ କରିବାରେ ସେ ଜଣେ ସାର୍ଥକ ଶିଳ୍ପୀ । ୧୯୮୭ ମସିହାରେ ସେ 'ଝଙ୍କାର' ପୁରସ୍କାର, ୧୯୮୪ ମସିହାରେ 'ହିରଣ୍ୟଗର୍ଭ' ଗଳ୍ପପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୧ ମସିହାରେ 'ବନ୍ଧ୍ୟା ଗାନ୍ଧାରୀ' ଗଳ୍ପ ସଂକଳନ ପାଇଁ ଶାରଳା ପୁରସ୍କାର (ମରଣଉତ୍ତର) ୧୯୯୨ ମସିହାରେ 'ବିଚିତ୍ର ବର୍ଣ୍ଣା' ଗଳ୍ପ ବହି ନିମନ୍ତେ କେନ୍ଦ୍ର ସାହିତ୍ୟଏକାଡ଼େମୀ ପୁରସ୍କାର (ମରଣଉତ୍ତର) ରେ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଅସାମାଜିକ ଡାଏରୀ - ୧୯୫୪, ଅନ୍ଧଗଳିର ଅନ୍ଧକାର - ୧୯୭୨, ରାଗତୋଡ଼ି - ୧୯୭୯, ବହୁରୂପୀ - ୧୯୭୯, ହିରଣ୍ୟଗର୍ଭ - ୧୯୮୨ ଗଳ୍ପ - ୧୯୮୨, ବିଷୁବରେଖା - ୧୯୮୩, ବନ୍ଧ୍ୟାଗାନ୍ଧାରୀ - ୧୯୮୮, ଅମରିଲତା - ୧୯୯୦, ବିଚିତ୍ରବର୍ଣ୍ଣା - ୧୯୯୧, ଛାୟା ପୁତ୍ରର କାଳ - ୧୯୯୧, ପ୍ରେମ ପ୍ରତିମା - ୧୯୯୩ ।



# ଶାନ୍ତନୁ କୁମାର ଆଚାର୍ଯ୍ୟ
## (୧୯୩୪)

ଓଡ଼ିଆ ସାହିତ୍ୟରେ ଶାନ୍ତନୁ କୁମାର ଆଚାର୍ଯ୍ୟ ଏକ ବଳିଷ୍ଠ ପ୍ରତିଭା । କଥାକାର ଭାବରେ ତାଙ୍କର ସିଦ୍ଧି ଅଧିକ । ସେ ୧୯୬୧ ମସିହାରେ 'ନରକିନ୍ନର' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୬ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୭ ମସିହାରେ ବିଷୁବ ପୁରସ୍କାର, ୧୯୮୭ ମସିହାରେ 'ଶକୁନ୍ତଳା' ଉପନ୍ୟାସ ପାଇଁ ଶାରଳା ପୁରସ୍କାର, ୧୯୯୩ ମସିହାରେ 'ଚଳନ୍ତି ଠାକୁର' ଗଳ୍ପ ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଗଳ୍ପ ସଂକଳନ** - ମନ ମର୍ମର, ଏଇ ଶେଷ ପଦଟି, ଅରଣ୍ୟର ଚୂଳ, ଦୁର୍ବାର, ଅଦିନ ବଉଳ, ଏକବିଂଶ ଶତାବ୍ଦୀ ପାଇଁ ଗଳ୍ପ, ଆଦ୍ୟ ସକାଳ, ଗଳ୍ପ ବର୍ଣ୍ଣାଳି, ଚଳନ୍ତି ଠାକୁର, ସର୍ପଯାନ

ନାଟାଲିୟାର - ଓମ୍‌କାର,

ଉପନ୍ୟାସ - ନରକିନ୍ନର - ୧୯୬୨, ଶତାବ୍ଦୀର ନଚିକେତା - ୧୯୬୫, ଦକ୍ଷିଣାବର୍ତ୍ତ - ୧୯୭୩, ତିନୋଟି ରାତିର ସକାଳ - ୧୯୬୯, ଯାତ୍ରାର ପ୍ରଥମ ପଦ - ୧୯୭୩, ଅନ୍ୟଏକ ସମୟ ଅନ୍ୟ ଏକ ଭାରତ - ୧୯୭୭, ଶକୁନ୍ତଳା - ୧୯୮୦, ଅନ୍ନ ହଜିଯିବା ପରେ, ମନ୍ତ୍ରୀଙ୍କ ସେୟାର -୧୯୮୮, ଧରିତ୍ରୀ କାନ୍ଦ - ୧୯୯୪ ।

**ଭ୍ରମଣ କାହାଣୀ** - କରଞ୍ଜିଆ ଡାଏରୀ ।

**ଶିଶୁଗଳ୍ପ ସଂକଳନ** - ବାର ବଗିଚାର ସୌଦାଗର

# ଗୁରୁଚରଣ ପଟ୍ଟନାୟକ

## (୧୯୧୭)

ପ୍ରଗତିବାଦୀ ଚେତନାର ଅନ୍ୟତମ ସାରଥୀ ଭାବେ, ଅଗ୍ରଜ ଅନନ୍ତ ପଟ୍ଟନାୟକଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ଗୁରୁଚରଣ ପଟ୍ଟନାୟକ ଧର୍ମ, ସାହିତ୍ୟ, ସଂସ୍କୃତି ସମ୍ବନ୍ଧୀୟ ରଚନାରେ ସଫଳ ହୋଇଛନ୍ତି । କାର୍ଲମାର୍କସଙ୍କ ସାମ୍ୟବାଦୀ ଦର୍ଶନରେ ସେ ପ୍ରଭାବିତ ହୋଇଥିଲେ । ୧୯୯୪ ମସିହାରେ ସେ 'ଜଗତ ଦର୍ଶନରେ ଜଗନ୍ନାଥ' ପ୍ରବନ୍ଧ ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଅନୁଦିତଗ୍ରନ୍ଥ** - କ୍ୟାପିଟାଲ ସମ୍ପର୍କରେ, ମାର୍କସ ବାଦ-ଲେଲିନ୍‌ବାଦର ମୂଳତତ୍ତ୍ୱ, ମାର୍କସବାଦୀ ଦର୍ଶନ, ଲେନିନ୍, କମ୍ୟୁନିଜ୍‌ମ କ'ଣ ? ମାର୍କସ ଓ ମାର୍କସବାଦ ।

**ଭ୍ରମଣ କାହାଣୀ** - ଋଷରେ ଯାହା ଦେଖିଲି, ପ୍ରଳୟ ଗର୍ଭରୁ

**ସାହିତ୍ୟ ସମ୍ବନ୍ଧୀ** - ଓଡ଼ିଆ ସାହିତ୍ୟର ମତି ଓ ଗତି, ସୃଷ୍ଟି-ଦୃଷ୍ଟି-କୃଷ୍ଟି, ସଂକଟରେ ସାହିତ୍ୟ,

**ପ୍ରବନ୍ଧ ଓ ଆଲୋଚନା** - ସଭ୍ୟତା ଓ ସଂସ୍କୃତି, ଖଣ୍ଡା ଓ କଲମ, ଧର୍ମ ଓ ରାଜନୀତି, ଗଞ୍ଜାମରେ ରକ୍ତ ପ୍ରଭାତ, ଭାରତରେ ଇଂରେଜରାଜ, ଜଗତ ଦର୍ଶନରେ ଜଗନ୍ନାଥ, ଜଗନ୍ନାଥ ଦର୍ଶନରେ ଜଗତ ।

# ନୃସିଂହ ଚରଣ ପଣ୍ଡା

## (୧୯୩୨)

ପୁରାଣ ଓ ଇତିହାସରୁ ଉପାଦାନ ସଂଗ୍ରହକରି ଉପନ୍ୟାସରେ ତାହାକୁ ସାର୍ଥକରୂପେ ରୂପାୟନ କରିବାରେ ନୃସିଂହଚରଣ ପଣ୍ଡାଙ୍କ ଲେଖନୀ ସଫଳ ହୋଇଛି । ଔପନ୍ୟାସିକ ଭାବେ ତାଙ୍କର ପ୍ରତିଭା ଅନନ୍ୟ । ୧୯୮୪ ମସିହାରେ ସେ 'ସପ୍ତସିନ୍ଧୁ' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୩ ମସିହାରେ 'ଖାରବେଳ' ଉପନ୍ୟାସ ପାଇଁ ସେ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଉପନ୍ୟାସ** - ମେଷପାଳକ - ୧୯୭୭, ଦଗ୍‌ଧ ଗୋଲାପର- ଚିରବସନ୍ତ - ୧୯୮୧, ସପ୍ତସିନ୍ଧୁ - ୧ମ ଖଣ୍ଡ - ୧୯୮୧, ସପ୍ତସିନ୍ଧୁ - ୨ୟ ଖଣ୍ଡ, ଚଣ୍ଡାଶୋକ - ୧୯୮୩, ଧର୍ମାଶୋକ - ୧୯୮୫, ଖାରବେଳ - ୧୯୮୯, ଅଶାନ୍ତ ଅନଳ- ୧୯୯୦, ବିଶ୍ୱାମିତ୍ର ଉବାଚ - ୧୯୯୨ ।

**ପ୍ରବନ୍ଧ** - ବିଜ୍ଞାନକ ପ୍ରକୃତି, ବିଜ୍ଞାନ ଓ ଭଗବାନ, ଈଶ୍ୱର ।



# ଚନ୍ଦ୍ରଶେଖର ରଥ

## (୧୯୨୯)

ଓଡ଼ିଆ ସାହିତ୍ୟରେ ଜଣେ ଲବ୍ଧପ୍ରତିଷ୍ଠିତ ପ୍ରତିଭା ରୂପେ ଚନ୍ଦ୍ରଶେଖର ରଥ ପରିଚିତ । ରମ୍ୟରଚନା, ଗଳ୍ପ, ଉପନ୍ୟାସ ରଚନାରେ ଜୀବନର ସନାତନ ମୂଲ୍ୟବୋଧ ସହିତ ଆଧୁନିକ ଜୀବନର ବ୍ୟର୍ଥତାକୁ ସାର୍ଥକରୂପେ ରୂପାୟିତ କରିଛନ୍ତି । ସେ ୧୯୭୪ ମସିହାରେ 'ଝଙ୍କାର' ପୁରସ୍କାର, ୧୯୭୮ ମସିହାରେ 'ଅଶ୍ରୁତସ୍ୱର' ରମ୍ୟରଚନା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପରୁସ୍କାର, ୧୯୭୭ ମସିହାରେ ଉପନ୍ୟାସ 'ଅସୂର୍ଯ୍ୟ ଉପନିବେଶ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପରୁସ୍କାର ୧୯୮୨ ମସିହାରେ 'ସମ୍ରାଟ ଓ ଅନ୍ୟମାନେ' ଗଳ୍ପ ପୁସ୍ତକ ପାଇଁ ଶାରଳା ପୁରସ୍କାରର ସମ୍ମାନିତ ହୋଇଛନ୍ତି । ୧୯୯୭ ମସିହାରେ ସେ 'ସବୁଠାରୁ ଦୀର୍ଘରାତି' ଗଳ୍ପ ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ, ପୁରସ୍କାର ପାଇଛନ୍ତି ।

**ରମ୍ୟରଚନା** - ଦୃଷ୍ଟି ଓ ଦର୍ଶନ - ୧୯୭୧, ଏ ଯେଉଁ ପୃଥିବୀ - ୧୯୭୫, ମୁଁ ସତ୍ୟ ଧର୍ମା କହୁଛି - ୧୯୭୭, ମଧୁସନ୍ଧାନ - ୧୯୭୮, ଉତ୍ତରଅରଣ୍ୟ -୧୯୮୦, ଅଶ୍ରୁତ ସ୍ୱର - ୧୯୮୧, କ୍ରୀତଦାସର ସ୍ୱପ୍ନ - ୧୯୮୧, ପ୍ରଥମବର୍ଗ - ୧୯୯୦, ରଥସପ୍ତକ - ୧୯୯୨ ।

**ଉପନ୍ୟାସ** - ଯନ୍ତାରୂଢ଼ - ୧୯୬୭, ଅସୂର୍ଯ୍ୟ ଉପନିବେଶ - ୧୯୭୪, ନବଜାତକ - ୧୯୮୧ ।

**ଗଳ୍ପ ସଂକଳନ** - ଅନେକ ବନ୍ୟାପରେ - ୧୯୭୮, ଅଶ୍ୱାରୋହୀର ଗଳ୍ପ - ୧୯୭୯, ସମ୍ରାଟ ଓ ଅନ୍ୟମାନେ - ୧୯୮୦, ଅନ୍ୟଏକ ସକାଳ - ୧୯୮୧, ସବୁଯାକ ସ୍ୱପ୍ନ - ୧୯୮୪, ବାଘ ସବାର, କ୍ରମଶଃ ଗଭୀର ନଈ, ଏତେ ପାଖରେ ସମୁଦ୍ର -୧୯୮୮, ବିକ୍ରିପାଇଁ ଫୁଲମାଳ - ୧୯୯୦, ସହଯାତ୍ରିକ, ସ୍ୱପ୍ନବାହକ - ୧୯୯୨, ସବୁଠାରୁ ଦୀର୍ଘରାତି - ୧୯୯୫ ।

**କବିତା ସଂକଳନ** - ତୁମପାଇଁ ପକ୍ଷୀଗଣ ।



# ଶରତ କୁମାର ମହାନ୍ତି
## (୧୯୩୮)

ପ୍ରବନ୍ଧ ସାହିତ୍ୟରେ ଜଣେ ସଫଳ ସ୍ରଷ୍ଟା ଭାବରେ ଶରତ କୁମାର ମହାନ୍ତି ପରିଚିତ । ବିଜ୍ଞାନ ସମ୍ବନ୍ଧୀୟ ରଚନାରେ ସେ ବେଶ୍ ସୁନାମ ଅର୍ଜନ କରିଛନ୍ତି । ୧୯୮୮ ମସିହାରେ ସେ 'ସଂସ୍କୃତି ଓ ଅପସଂସ୍କୃତି' ପ୍ରବନ୍ଧ ରଚନା ପାଇଁ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ୨୦୦୨ ମସିହାରେ  କେନ୍ଦ୍ରସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ପ୍ରବନ୍ଧ** - ସକ୍ରେଟିସ ଓ ପ୍ଲାଟୋ, ଅସ୍ତିତ୍ୱବାଦର ମର୍ମକଥା, ଛତ୍ରପତି ବିବେକାନନ୍ଦ, ଗ୍ରୀକ୍ ଜାତିର ଜୀବନଗାଥା, ଗାନ୍ଧୀମଣିଷ, ସଂସ୍କୃତି ଓ ଅପସଂସ୍କୃତି, ଏଣୁତେଣୁ କିଛି, ଶେଷ ଦଶକର ରଚନା, ବିବର୍ତ୍ତନଶୀଳ ମଣିଷର ସଂଗ୍ରାମ, ବୋଦ୍ଧାଙ୍କର ଦାଦାଗିରି ଓ ଅନ୍ୟାନ୍ୟ ପ୍ରବନ୍ଧ, ବୈଜ୍ଞାନିକ ଚିନ୍ତାଧାରା, ଜାଁପଲା ସାର୍ତ୍ରେ, କେଉଁ ଓରିଷ୍ଟ ସାହିତ୍ୟ ଚାଷ ।

**ବିଜ୍ଞାନ ସମ୍ବନ୍ଧୀୟ ରଚନା** - ଆଧୁନିକ ରୂପରେଖ, ଏକବିଂଶ ଶତାବ୍ଦୀର ନଷ୍ଟ ପରିବେଶ, ମହାନଭାରତୀୟ ବିଜ୍ଞାନୀ, ଆଟମ୍‌ରୁ କ୍ୱାଣ୍ଟମ୍, ଭୂବିଜ୍ଞାନୀ ସହିତ ପୃଥିବୀ ପରିକ୍ରମା, ପୃଥିବୀ ଓ ତାର ପ୍ରତିବେଶୀ, ବିଚିତ୍ର ବ୍ରହ୍ମାଣ୍ଡ, ବିଜ୍ଞାନଦୃଷ୍ଟି ସୂର୍ଯ୍ୟର ତୃତୀୟଗ୍ରହ, ବିଜ୍ଞାନ ଦିଗନ୍ତି ।



# ଚିତ୍ତରଞ୍ଜନ ଦାସ

## (୧୯୩୧)

ଓଡ଼ିଆ ସାହିତ୍ୟରେ ଜଣେ ଲବ୍ଧ ପ୍ରତିଷ୍ଠିତ ସୃଜନଶୀଳ ପ୍ରତିଭା ରୂପେ ଚିତ୍ତରଂଜନଦାସ ଆଦୃତ ହୋଇଛନ୍ତି । ପ୍ରବନ୍ଧ, ରମ୍ୟରଚନା, ଭ୍ରମଣ ସାହିତ୍ୟ ତଥା ଅନୁବାଦ କ୍ଷେତ୍ରରେ ତାଙ୍କର ପ୍ରତିଭା ଅନନ୍ୟ, ଅସାଧାରଣ ଅଟେ । ସେ ୧୯୬୦ ମସିହାରେ 'ଜୀବନ ବିଦ୍ୟାଳୟ' ପ୍ରବନ୍ଧ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୯ ମସିହାରେ 'ଓଡ଼ିଶା ଓ ଓଡ଼ିଆ' ପ୍ରବନ୍ଧ ପାଇଁ ଶାରଳା ପୁରସ୍କାର, ୨୦୦୦ ମସିହାରେ 'ବିଶ୍ୱକୁ ଗବାକ୍ଷ' ରମ୍ୟରଚନା ପାଇଁ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସେ ସମ୍ମାନିତ ହୋଇଛନ୍ତି ।

**ପ୍ରବନ୍ଧ ଓ ରମ୍ୟରଚନା** - ଶିଳାଓ ଶାଳଗ୍ରାମ - ୧୯୫୮, ସମାଜ, ପରିବର୍ତ୍ତନ ଓ ବିକାଶ - ୧୯୫୮, କେତେ ଦିଗନ୍ତ - ୧୯୭୨, ତରଂଗ ଓ ତଡ଼ିତ - ୧୯୭୫, ମାନିଷାଦ - ୧୯୭୮, ଏକଲବ୍ୟ କଥା ଓ ଅନ୍ୟାନ୍ୟ ପ୍ରବନ୍ଧ - ୧୯୭୮, ଛାତିରେ ମୁଁ ଯବନ - ୧୯୭୯, ଶିକ୍ଷାରୁ ସଂକ୍ରମଣ - ୧୯୮୧, ସଂସ୍କୃତି ଓ ଓଡ଼ିଶା - ୧୯୮୧, ଗାନ୍ଧୀ ଗୋପବନ୍ଧୁ - ୧୯୮୧, ନଖଦର୍ପଣେନ - ୧୯୮୨, ପଶ୍ୟତି ଦିଶି ଦିଶି - ୧୯୮୬, ଅରମ୍ୟରଚନା - ୧୯୮୬, ଓଡ଼ିଶା ଓ ଓଡ଼ିଆ - ୧୯୮୮, ଆଉ ଏକ ଦୃଷ୍ଟିରେ - ୧୯୯୦, ନେତା ଓ ନାରାୟଣ - ୧୯୯୦, ଚିଦ୍‌ବିସ୍ତାର, ଓଡ଼ିଶା ଓ ଓଡ଼ିଆ, ସବୁମୂଳରେ ମଣିଷ, ହସ କେତେ କାନ୍ଦ କେତେ, ଗ୍ରନ୍ଥ ମନ୍ଥନ, ସମ୍ପାଦକର ସ୍ତମ୍ଭ - ୧ମ, ୨ୟ, ୩ୟ, ଅନାବନା ରଚନା, ଅଭୟ ଅମିତ୍ରାଦ୍, ପଶ୍ୟତି ଦିଶିଦିଶି, କାଳକୁ କଜ୍ୱଳ,

**ଭ୍ରମଣ କାହାଣୀ** - ନେପାଳପଥେ - ୧୯୪୮, ଗଙ୍ଗାମାଳରେ ସାତଦିନ - ୧୯୫୫, ସାଗର ଯାତ୍ରୀ - ୧୯୫୫, ଡ଼େନମାର୍କ ଚିଠି - ୧୯୫୫, ଶିଳାତୀର୍ଥ - ୧୯୯୧, ଭାରତରୁ ଚୀନ୍ - ୧୯୮୮, ଏବ୍‌ଡେଇ୍ ଇସ୍ରାଏଲ, ସାଗରପଥ ।

**କବିତା** - ଦୁଇ ଅଧ୍ୟାୟ - ୧୯୪୮ ।

**ଡାଏରୀ ସାହିତ୍ୟ** - ଜଙ୍ଗଲ ଚିଠି, ଜୀବନ ବିଦ୍ୟାଳୟ - ୧୯୬୦, ୧ମ ଭାଗ ଜୀବନ ବିଦ୍ୟାଳୟ - ୧୯୬୨, ୨ୟ ଭାଗ, ରୋହିତରାଡାଏରୀ ।

**ଅନୁବାଦ** - ସମାଜ ଗବେଷଣା ବିଧି, ଦାସୀ ସିଲିଆ, ରାଜ କୁମାର, ମହାମାନବ, ବିଦ୍ରୋହୀ ଆତ୍ମା, ମୋ ଜୀବନ ଓ ସାଧନା, ଦାସୀସିଲ୍‌ଜା ରାଜକୁମାର, ସମ୍ମୋହିନୀ, ଚାଷୀ, ଡକ୍ଟର ଜିଭାଗୋ, ମୋ ହୃଦୟ ପିଲାଙ୍କପାଇଁ, ଜଣେ ଶିକ୍ଷକଙ୍କୁ ଚିଠି, ଯସ୍‌ନାୟା ପୋଲ୍ୟାନା, ରବୀନ୍ଦ୍ର ଗଳ୍ପ ଚୟନ, ଋଷିଆ ଚିଠି, ଦୁଇ ଭଉଣୀ, ବିନୋଦିନୀ, ପ୍ରଥମପ୍ରତିଶ୍ରୁତି, ଛାତ୍ରଙ୍କ ପ୍ରତି, ନାରୀ ସମାଜପ୍ରତି ସ୍ୱାସ୍ଥ୍ୟର ଚାବି, ରାମନାମ, ସତ୍ୟାଗ୍ରହ, ସ୍ୱାଧୀନତା ଓ ତା'ପରେ, ଦିବ୍ୟଜୀବନ, ଯୋଗ ସମନ୍ୱୟ, ମାନବ ଯୁଗଚକ୍ର, ମାତୃ ରଚନବଳୀ (୧୭ଖଣ୍ଡ), ମାଆ, ଶ୍ରୀଅରବିନ୍ଦ ।

**ଗବେଷଣା** - ଅଚ୍ୟୁତାନନ୍ଦ ଓ ପଞ୍ଚସଖା ଧର୍ମ, ଓଡ଼ିଶାରେ ମହିମା ଧର୍ମ, ସନ୍ଥ ସାହିତ୍ୟ, ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶ ଧାରା, ଭକ୍ତ ଚରଣ ଦାସ, ବଳରାମ ଦାସ, ଆଲୋକର କବି ରବୀନ୍ଦ୍ର ନାଥ, A glimpse in to Oriya literature (1982).

**ଶିଶୁସାହିତ୍ୟ** - ଗପ ଅଗପ, ଏସପ୍‌କଥା, ମଣିଷଙ୍କ ମଧ୍ୟରେ ମଣିଷ, କେତେ ଦେଶର କଥା, ସୁନ୍ଦର ଦେଶ ଫିନ୍‌ଲାଣ୍ଡ, ମାର୍କ ପାଲୋ ।

**ଜୀବନୀ** - ନବକୃଷ୍ଣ ଚୌଧୁରୀ, ଭିନ୍ନ ଜଣେ ବିବେକାନନ୍ଦ ।

**ଆତ୍ମଜୀବନୀ** - ମିତ୍ରସ୍ୟ ଚକ୍ଷୁସା ।



# ପ୍ରତିଭା ରାୟ
## (୧୯୪୪)

ଓଡ଼ିଆ କଥା ସହିତ୍ୟରେ ଜଣେ ସଫଳ ସ୍ରଷ୍ଟା ଭାବରେ ପ୍ରତିଭା ରାୟ ପାଠକମାନଙ୍କଠାରେ ଆଦୃତ ହୋଇପାରିଛନ୍ତି । ରସୋର୍ତ୍ତୀର୍ଣ୍ଣ କଥନ ଶୈଳୀର ନୈପୁଣ୍ୟ ପାଇଁ ସେ ବେଶ୍ ଲୋକପ୍ରିୟତା ଅର୍ଜନ କରିଛନ୍ତି । ସର୍ବଭାରତୀୟ ସ୍ତରରେ ସେ ସୁନାମ ବଜାୟ ରଖିଛନ୍ତି, ୧୯୮୬ ମସିହାରେ 'ଶିଳାପଦ୍ମ' ଉପନ୍ୟାସ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୦ ମସିହାରେ 'ଯାଜ୍ଞସେନୀ' ଉପନ୍ୟାସ ପାଇଁ ଶାରଳା ପୁରସ୍କାର ଓ ମୂର୍ତ୍ତିଦେବୀ ପୁରସ୍କାର, ୧୯୯୫ ମସିହାରେ ପ୍ରଜାତନ୍ତ୍ରର ବିଷୁବ୍ ପୁରସ୍କାର ତଥା ୧୯୮୯ ମସିହାରେ ଝଙ୍କାର ପୁରସ୍କାର ସେ ସମ୍ମାନିତା ହୋଇଛନ୍ତି । ୨୦୦୦ ମସିହାରେ ସେ 'ଉଲଂଘନ' ଗଳ୍ପ ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି ।

**ଉପନ୍ୟାସ -** ଦୁଇଟି ଢ଼େଉ - ୧୯୬୬, ବର୍ଷା-ବସନ୍ତ-ବୈଶାଖ - ୧୯୭୪,
ଅରଣ୍ୟ - ୧୯୭୭, ଉପନାୟିକା - ୧୯୭୮, ନିଷିଦ୍ଧ ପୃଥିବୀ - ୧୯୭୮,
ପରିଚୟ - ୧୯୭୮ ପୁଣ୍ୟତୋୟା - ୧୯୭୯, ଅପରିଚିତା - ୧୯୭୯
ମେଘମେଦୁର - ୧୯୮୦, ଆଶାବରୀ - ୧୯୮୦ ଅୟମାରମ୍ଭ - ୧୯୮୧,
ନୀଳତୃଷ୍ଣା - ୧୯୮୧ ସମୁଦ୍ରର ସ୍ୱର - ୧୯୮୨, ଶିଳାପଦ୍ମ - ୧୯୮୩
କଇଁଚର ସପନ, ଦେହାତୀତ - ୧୯୮୬, କୂଳର ନିଆଁ, ନଦୀ ନିସ୍ତରଙ୍ଗ
ଯାଜ୍ଞସେନୀ - ୧୯୮୫, ଡାଳିମ୍ବ ଫୁଲର ହସ, ଆଦିଭୂମି - ୧୯୯୩
ଉତ୍ତର ମାର୍ଗ - ୧୯୮୮, ମହାମୋହ - ୧୯୯୭

**ଗଳ୍ପ ସଂକଳନ -** ଐକ୍ୟତାନ, ହାତବାକ୍ସ, ସାମାନ୍ୟକଥନ, ଗଙ୍ଗଶିଉଳି, ଅସମାପ୍ତ, ଚନ୍ଦ୍ରଭାଗା ଓ ଚନ୍ଦ୍ରକଳା, ଅନାବନା, ଅବ୍ୟକ୍ତ, ଇଉିବୁରଳ, ହରିତ୍‌ପତ୍ର, ପୃଥକ୍ ଈଶ୍ୱର - ଭଗବାଁ ଦେଶ, ମନୁଷ୍ୟରସ୍ୱର, ଷଷ୍ଠସତୀ, ମୋକ୍ଷ, ଉଲଂଘନ ।

**ଭ୍ରମଣ ସାହିତ୍ୟ -** ମୈତ୍ରୀ ପାଦପର ଶାଖା ପ୍ରଶାଖା ଦୂର ଦ୍ୱିବିଧ,



# କୃଷ୍ଣପ୍ରସାଦ ମିଶ୍ର

## (୧୯୩୩ - ୧୯୯୪)

ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ କଥାକାର ଭାବରେ ଡଃ କୃଷ୍ଣପ୍ରସାଦ ମିଶ୍ରଙ୍କ ପ୍ରତିଭା ଅନନ୍ୟ, ଅସାଧାରଣ ଅଟେ । ଗଳ୍ପ ଓ ଉପନ୍ୟାସଗୁଡ଼ିକର ଆଧୁନିକ ଜୀବନର ବାସ୍ତବଧର୍ମୀ ରୂପାୟନରେ ତାଙ୍କ ଲେଖନୀ ସଫଳ ହୋଇଛି । ୧୯୮୫ ମସିହାରେ ସେ 'ଚିତ୍ରିତ ଚାଦର' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । 'ମାନସ' ପ୍ରତ୍ରିକାର ସମ୍ପାଦକ ଭାବରେ ସେ ଲୋକପ୍ରିୟତା ଅର୍ଜନ କରିଛନ୍ତି ।

**ଉପନ୍ୟାସ** - ସପନ କଥା - ୧୯୪୫, ମୃଗତୃଷ୍ଣା - ୧୯୫୮, ସିଂହକଟି - ୧୯୫୯, ନେପଥ୍ୟେ - ୧୯୬୧ ।

**ଗଳ୍ପ ସଂକଳନ** - ମୌନାବତୀ ରାତ୍ରି - ୧୯୬୧, କ୍ରୀତ ଦାସର କାବ୍ୟ - ୧୯୬୩, ଗଳ୍ପ ସଞ୍ଚୟନ, ନାଏଗ୍ରା ଓ ଦେବଯାନୀ - ୧୯୬୮, ଅରଣ୍ୟ ଓ ଉପବନ - ୧୯୭୦, କଥା ଏକ ନଦୀ, ଭୃଗୁ ସଂହିତା - ୧୯୭୩, ନିଜକୁ ନାୟକ କରି - ୧୯୭୫, ପଶ୍ଚିମା - ୧୯୭୮, ସନାତନ ଓଝା ଗଲେ କୁଆଡ଼େ - ୧୯୮୧, ଚିତ୍ରିତ ଚାଦର - ୧୯୮୩, ପର୍ବତାରୋହଣ - ୧୯୮୭, ପାରିଜାତକ, ମାଣିକ୍ୟ ସନ୍ଧାନ - ୧୯୮୯, ଡାଫୋଡିଲ୍ ଓ ଗଂଗଶିଉଳି - ୧୯୯୧, ଶ୍ରୀଗଣେଶ - ୧୯୯୩ ।

**ଭ୍ରମଣକାହାଣୀ** - କାନାଡ଼ା ଡ଼ାଏରୀ - ୧୯୯୪

**ପ୍ରବନ୍ଧ ସଂକଳନ** - ଦର୍ଶନ ଓ ସମାଲୋଚନା - ୧୯୫୮, ଚେତନାର ସୀମା - ୧୯୮୨, ଚେତନା ଓ ଚେତନା, ପ୍ରବନ୍ଧମାନସ, ପ୍ରଦୀପଶିଖା ।

**ଜୀବନୀ ପୁସ୍ତକ** - ଲକ୍ଷ୍ମୀବାଈ, ନିବେଦିତା ।



# ପ୍ରତିଭା ଶତପଥୀ

## (୧୯୪୫)

ଆଧୁନିକ ଓଡ଼ିଆ କବିତାରେ ଜଣେ ସଫଳ ସ୍ରଷ୍ଟାଭାବରେ ପ୍ରତିଭା ଶତପଥୀଙ୍କ ପ୍ରତିଭା ଅନନ୍ୟ ତଥା ଅନବଦ୍ୟ ଅଟେ । ନାରୀ ଜୀବନର ବହୁ ସମ୍ବେଦନଶୀଳ ଅନୁଭବକୁ ବୈଚିତ୍ର୍ୟ ମଣ୍ଡିତ କରିବାରେ ତାଙ୍କର କଳା କୁଶଳତା ବେଶ୍ ମାର୍ମିକ, ୧୯୮୧ ମସିହାରେ ସେ 'ଝଙ୍କାର' ପୁରସ୍କାର, ୧୯୮୬ ମସିହାରେ 'ନିମିଷେ ଅକ୍ଷର' କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୨ ମସିହାରେ 'ଶବରୀ' କବତା ସଂକଳନ ପାଇଁ ଶାରଳା ପୁରସ୍କାରରେ ସମ୍ମାନିତା ହୋଇଛନ୍ତି । ୨୦୦୨ ମସିହାରେ ସେ ତନ୍ମୟ ଧୂଳି କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି ।

କବିତା ସଂକଳନ - ଅସ୍ତ ଜହ୍ନର ଏଲିଜି - ୧୯୭୦, ଗ୍ରସ୍ତ ସମୟ - ୧୯୭୪, ସାହାଡ଼ା ସୁନ୍ଦରୀ- ୧୯୭୮, ନିୟତବସୁଧା- ୧୯୮୦, ନିମିଷେ ଅକ୍ଷର- ୧୯୮୫, ମହାମେଘ- ୧୯୮୮, ଶବରୀ- ୧୯୯୧, ତନ୍ମୟଧୂଳି, ଅଧାଅଧା ନକ୍ଷତ୍ର - ୨୦୦୧ ।

ଅନୁବାଦ - ନୀଳ ନିଶୀଥର ତାରା - (ଉପନ୍ୟାସ)

ସାହସର ଶିଖା - (ଉପନ୍ୟାସ)

ସମାଲୋଚନା - 'କଳ୍ପନାର ଅଭିଷେକ' - (ଗବେଷଣାତ୍ମକ ନିବନ୍ଧ)

ଉତ୍ତର ଆଧୁନିକ ଓଡ଼ିଆ କବିତା ଓ ଅନ୍ୟାନ୍ୟ ପ୍ରବନ୍ଧ, ପ୍ରତିଫଳନ, ସ୍ପନ୍ଦନର ଭୂମି ।



# ରାମଚନ୍ଦ୍ର ବେହେରା

## (୧୯୪୫)

ଆଧୁନିକ ଓଡ଼ିଆ ସାହିତ୍ୟରେ କଥାକାର ରାମଚନ୍ଦ୍ର ବେହେରା ଜଣେ ପ୍ରଥିତଯଶା ଶିଳ୍ପୀ । ଗାଳ୍ପିକ ତଥା ଔପନ୍ୟାସିକ ଭାବରେ ତାଙ୍କର ପ୍ରତିଭା ଅସାଧାରଣ । ୧୯୮୧ ମସିହାରେ ସେ ଝଙ୍କାର ପୁରସ୍କାର, ୧୯୯୯ ମସିହାରେ ବିଷୁବ ପୁରସ୍କାର, ୧୯୯୧ ମସିହାରେ 'ଓଁ କାରଧ୍ୱନି' ଗଳ୍ପ ସଂକଳନ ପାଇଁ ଶାରଳା ପୁରସ୍କାର, ୧୯୯୩ ମସିହାରେ 'ଅଭିନୟର ପରିଧି' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଶେଷ ସୂର୍ଯ୍ୟର ବହ୍ନି, ଦ୍ୱିତୀୟ ଶ୍ମଶାନ - ୧୯୭୬, ଅଚିହ୍ନା ପୃଥିବୀ - ୧୯୭୯, ଅବଶିଷ୍ଟ ଆୟୁଷ - ୧୯୮୧, ଓଁକାର ଧ୍ୱନି - ୧୯୮୭, ଭଗ୍ନାଂଶର ସ୍ୱପ୍ନ - ୧୯୯୨, ବଞ୍ଚି ରହିବା - ୧୯୯୦ ।

ଉପନ୍ୟାସ - ଅଭିନୟରେ ପରିଧି, ମୁକ୍ତିର ରୂପରେଖ, ଧୂସର ସୂର୍ଯ୍ୟାସ୍ତ, ମୁଁ ଫେରିଆସିଛି, ମନିକା ଏବେ କେଉଁଠି, ମହାକାବ୍ୟର ମୁହଁ, ଫଟା କାଛର ଗଛ ।

ନାଟକ - ନିଷିଦ୍ଧ ଇଲାକାର କାବ୍ୟ, ନିଦ, ନିଷିଦ୍ଧ ଇଲାକାର କବି, ଗୋଟିଏ ବିଚିତ୍ର ନକ୍ସା ଅଝାଲ ଉଡ଼ାଇଦେ ।

## ସୂର୍ଯ୍ୟ ନାରାୟଣ ଦାଶ

### (୧୯୦୭ - ୧୯୮୨)

ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭା । ଓଡ଼ିଆ ସାହିତ୍ୟ ଇତିହାସର ପ୍ରଣେତା ତଥା ଆଲୋଚନା, ଜୀବନୀ ମୂଳକ ରଚନା ପାଇଁ ସେ ଆଦୃତ ହୋଇ ପାରିଛନ୍ତି । ସେ ୧୯୬୭ ମସିହାରେ ଓଡ଼ିଆସାହିତ୍ୟର ଇତିହାସ' ଆଲୋଚନା ଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ୧୯୬୪ ମସିହାରେ ଏଥିପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଜୀବନୀ** - ଦେଶପ୍ରାଣ ମଧୁସୂଦନ, ଦେଶପ୍ରାଣ ଗୋପବନ୍ଧୁ, ଶ୍ରୀନିମ୍ବାର୍କ, ରାମାନୁଜ ଚରିତ, ବଳରାମ ଦାସ, ଜଗନ୍ନାଥଦାସ, କବିବର ରାଧାନାଥ ।

**ସମାଲୋଚନା** - ଓଡ଼ିଆସାହିତ୍ୟର ପରିଚୟ - ୧୯୪୫, ୧ମଭାଗ, ୨ୟ, ଓଡ଼ିଆସାହିତ୍ୟର ଇତିହାସ - ୧୯୦୩, ୧ମ ଭାଗ, ୨ୟ ଖଣ୍ଡ - ୧୯୬୫, ୩ୟ ଖଣ୍ଡ - ୧୯୬୬, ୪ର୍ଥ ଖଣ୍ଡ - ୧୯୭୧ ।

ଶ୍ରୀଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ, ଊନବିଂଶଶତାବ୍ଦୀର ଓଡ଼ିଶା, ପାଇକବିଦ୍ରୋହ, ସିପାହୀ ବିଦ୍ରୋହର ଝଲକ ।

## ଜ୍ଞାନୀନ୍ଦ୍ର ବର୍ମା

### (୧୯୧୬ - ୧୯୯୦)

ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭାବନ୍ତ ଶିଳ୍ପୀରୂପେ ଜ୍ଞାନୀନ୍ଦ୍ରବର୍ମା ପରିଚିତ । କବି, ଗାଳ୍ପିକ, ନାଟ୍ୟକାର, ଔପନ୍ୟାସିକ, ଅନୁବାଦକ ଭାବରେ ତାଙ୍କର ପ୍ରତିଭା ଅସଧାରଣ ଅଟେ, ୧୯୫୭ ମସିହାରେ 'ସ୍ୱର୍ଣ୍ଣସନ୍ଧ୍ୟା' ନାଟକ ଓ 'ଏଜରାପାଉଣ୍ଡ'ଙ୍କ କବତାର ଅନୁବାଦ ପାଇଁ ସେହିବର୍ଷ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପରୁସ୍କାରରେ ସମ୍ମାନିତ ହୋଇଛନ୍ତି । ଗୋଟିଏବର୍ଷ ଦୁଇଟି ପୁରସ୍କାର ଲାଭ କରିବା କ୍ଷେତ୍ରରେ ସେ ପ୍ରଥମ ସ୍ରଷ୍ଟା ।

**ଅନୁବାଦ** - ଇଲିଅଟ୍, ଏଜାରପାଉଣ୍ଡ ଓ ହ୍ୱାଇଟ୍‌ମ୍ୟାନ୍‌ଙ୍କ କବିତା, ଏମିଲ୍ ଜୋଲାଙ୍କ 'ନାନା', ମେଟରଲୀଙ୍କ 'ନୀଳବିହଙ୍ଗ', ଟେନିସନ୍‌ଙ୍କ 'ଏନୋକ୍ ଆଡ଼େନ୍' କାଳିଦାସଙ୍କ ମେଘଦୂତ ।

**କାବ୍ୟକବିତା** - ଏକରାତ୍ରି, ଉତ୍ତରକ୍ରାନ୍ତି, ବୋଲେ ହୁଁ ଟି, କଲରେଇଫୁଲ, ରେନେନ୍‌ସା ଓ ଡ଼ିକାଡ଼େନ୍‌ସ, ଜୟଦେବର ନୂତନ କବିତା, ଅନନ୍ୟ ପରିକ୍ରମା ।

**ଗଳ୍ପ** - ଅରଣ୍ୟର କୁଜ୍‌ଝଟିକା, ଜ୍ଞାନୀନ୍ଦ୍ରବର୍ମାଙ୍କ କ୍ଷୁଦ୍ରଗଳ୍ପ,

**ଉପନ୍ୟାସ** - ଅପରାହ୍ନର ଆକାଶେ, ଭୂମିକା, ଶତାବ୍ଦୀର ସ୍ୱପ୍ନଭଙ୍ଗ, ଲାଲଘୋଡ଼ା, ତିନୋଟି ହୃଦୟର କାହାଣୀ ଜୀବନରଛନ୍ଦ, ତନୁଅତନୁ, ଶେଷ ଅଭିସାର, ଏଲୋରାର ଛାୟା ବିଥୀ ।

**ନାଟକ** - ସ୍ୱର୍ଣ୍ଣଯୁଗର ସନ୍ଧ୍ୟା, ସ୍ୱର୍ଗର ଲୋତକ, ଦୁଇଟି ସୂର୍ଯ୍ୟର ଜୀବନୀ, ଦ୍ୱାପରର ଅଭିଯାନ ।



# ସତ୍ୟନାରାୟଣ ରାଜଗୁରୁ

## (୧୯୦୩ - ୯୭)

ଜଣେ ଐତିହାସିକ, ଗବେଷକ ତଥା ପ୍ରତ୍ନତତ୍ତ୍ୱବିତ୍ ଭାବରେ ସତ୍ୟନାରାୟଣ ରାଜଗୁରୁ ଜଣେ ବିଶିଷ୍ଟ ପ୍ରତିଭା ଅଟନ୍ତି । ୧୯୭୪ ମସିହାରେ ଭାରତସରକାର ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଡି.ଲିଟ୍ ଉପାଧିରେ ଭୂଷିତ କରିଛନ୍ତି । ଆତ୍ମଜୀବନୀ ପୁସ୍ତକ 'ମୋ ଜୀବନ ସଂଗ୍ରାମ' ପାଇଁ ୧୯୯୬ ମସିହାରେ ସେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଥିଲେ ।

ଐତିହାସିକ ମୂଳକ ରଚନା - କଳିଙ୍ଗର ଆତ୍ମକଥା, ଗଙ୍ଗବଂଶର ଇତିହାସ, ଓଡ଼ିଶାର ଇତିହାସ ।

**ଭାଷା ତାତ୍ତ୍ୱିକ ପ୍ରବନ୍ଧ** - ଓଡ଼ିଆ ଭାଷାର ଉପଭାଷା, ଓଡ଼ିଆ ଲିପିର କ୍ରମବିକାଶ, ଓଡ଼ିଶାର ଅଭିଲେଖ ବଳୀ ।

**ସମ୍ପାଦନା** - ପ୍ରସ୍ତାବ ଚିନ୍ତାମଣି, ଗୋପବନ୍ଧୁଙ୍କ ରଚନାବଳୀ ।

**ନାଟକ** - କଳିଙ୍ଗ ବିଜୟ, ଖାରବେଳ, କର୍ଣ୍ଣାଟ କୁମାରୀ, ଗଜପତି, ନାଟିକା - ଧର୍ମରାଜ, ବେତାର ନାଟକ, ରାଧାଭିଷେକ ।

**ଜୀବନୀ** - 'ମୋ ଜୀବନ ସଂଗ୍ରାମ' **ଖଣ୍ଡକାବ୍ୟ** - ଜନନୀ ଉତ୍କଳ



# ବିଭୂତି ପଟ୍ଟନାୟକ

## (୧୯୩୭)

ଓଡ଼ିଆ କଥାସାହିତ୍ୟର ଜଣେ ଲୋକପ୍ରିୟ ତଥା ପ୍ରତିଭାବନ୍ତ ଶିଳ୍ପୀ ଭାବରେ ବିଭୂତି ପଟ୍ଟନାୟକ ପରିଚିତ । ବହୁ ଉପନ୍ୟାସର ରଚୟିତା ଭାବରେ ସେ ଆଦୃତ । ୧୯୮୫ ମସିହାରେ 'ଅଶ୍ୱମେଧର ଘୋଡ଼ା' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୪ ଓ ୧୯୯୫ ମସିହାରେ ସେ 'ଝଙ୍କାର', 'ବିଷୁବ' ପୁରସ୍କାର, ୧୯୯୯ ମସିହାରେ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ଉପନ୍ୟାସ

| | | |
|---|---|---|
| ଶେଷ ବସନ୍ତ | ପ୍ରେମ ଓ ପୃଥିବୀ | ପ୍ରଥମ ସକାଳ |
| ଅଭିମାନ | ଦି'ପଟ ଶଙ୍ଖା | ଦିନ ଯାଏ ଚିହ୍ନ ରହେ |
| ପର ପୁରୁଷ | ହେବନ୍ଧୁ ବିଦାୟ | ଚପଳ ଛନ୍ଦା |
| ଗାରେ କଜ୍ଜ୍ୱଳ ଧାରେ ଲୁହ | ଉଜାଣି ଯମୁନା | ତୁମେ ତୃଷ୍ଣାର ଜଳ |
| ଓଦାମାଟିର ସ୍ୱର୍ଗ | ମନ ଭଲନାହିଁ | ସନ୍ଧ୍ୟା ରାଗ |
| ଶେଷ ଅଭିନୟ | ରଂଗନଟୀ | ସୁଲତାନା |
| ଅଶ୍ୱମେଧର ଘୋଡ଼ା | ବଧୂ ନିରୁପମା | ବିଦାୟ ବେଳା |
| ତୃତୀୟ ପୁରୁଷ | ଏଇ ମନ ବୃନ୍ଦାବନ | ଏକାନ୍ତ ଆଦିମ |
| ଖେଳଘର ଭାଙ୍ଗିଗଲା | ବନ୍ଦୀ ଯାଯାବର | ଛାୟା ଚନ୍ଦ୍ରିକା |

| | | | |
|---|---|---|---|
| ସ୍ନାୟୁ ସହରରେ ଶାନ୍ତିଭଙ୍ଗ | ଅନ୍ଧାକାରର ସିଡ଼ି | ଅସବର୍ଣ୍ଣ | |
| କଳାବତୀ | ନଷ୍ଟଚରିତ୍ର | କେଶବତୀ କନ୍ୟା | |
| ଶେଷ ରାତିର ସୂର୍ଯ୍ୟ | ଅଶୋକ ବନର ସୀତା | ଗ୍ରହଣ | |
| ନିଃସଙ୍ଗ ନକ୍ଷତ୍ର | ନଦୀ-ନାରୀ-କ୍ଷେତ୍ର | ନିଃ ସଙ୍ଗ ବିହଙ୍ଗୀ | |
| ଅନେକତାରାର ରାତ୍ରୀ | ମଧ୍ୟାହ୍ନର ଦ୍ବିବାରାତ୍ରି | ସେ ଦିନ ଚୈତ୍ରମାସ | |
| ବିଦାୟ ବେଳା | ଚହଲା ପାଣିର ଢେଉ | ଏଇ ଗାଁ ଏଇ ମାଟି | |
| ପ୍ରିୟ ବାନ୍ଧବୀ | ରାଗ ଅନୁରାଗ | ଦଗ୍ଧ ଫୁଲବନ | |
| ସମୟଶୋକ | ଦେବକୀର କାରାବାସ | ଦୀପତଳର ଦୃଶ୍ୟ | |
| ଏକାକିନୀ କୁନ୍ତଳା | ହସ କାନ୍ଦର ଛନ୍ଦ | ରାହୁ ଗ୍ରାସ | |
| କାଳବୈଶାଖୀ | ଛବିର ମଣିଷ | ଶେଷରାତ୍ରିର ସୂର୍ଯ୍ୟ | |
| ଅଶୋକ ବନରସୀତା | ଟୋପାଏ ସିନ୍ଦୂର ଦି'ପଟ ଶଙ୍ଖା, ନଦୀ ସମୁଦ୍ର | | |
| ବଉଳ ଫୁଲର ବାସ୍ନା | ନାଗଫେଣୀ | ଶେଲି ମାଉସୀ | |
| ଦୀପଶିଖା | ଆଗ୍ନେୟଗିରିରେ ବଣ ଭୋଜି, ଅଠାକାଠି | | |
| ପିୟପୁରୁଷ | ସୁବର୍ଣ୍ଣା | ତୁମେ ତୃଷ୍ଣାର ଜଳ | |
| ସମୟ ଅସମୟ | ମାୟାବୀ ହୃଦୟ | ଆଦିମ ଅରଣ୍ୟ | |
| ସନ୍ଧ୍ୟା ଦୀପର ଶିଖା | ସତୀ ଅସତୀ | ରାଣୀ ମହୁମାଛି | |
| ଅଦିନ ଶ୍ରାବଣ | ଧୂଳିଘର | ନିଦନାହିଁ | ଦିନକାଳ |
| ଭଲ ଝିଅ ଖରାପ୍ ଝିଅ | ସ୍ମୃତିର ସୁଦେଷ୍ଣା | ପ୍ରେମିକା | ବର୍ଣ୍ଣମାଳା |

**ଗଳ୍ପ ସଂକଳନ** - ମନଭଲ ନାହିଁ, ଉଣେଇଶି ଶହପଞ୍ଚାବନ, ରାଜକନ୍ୟାର ଦୁଃଖ, ନିମ୍ନଗାମୀ ମନ, କିଛି ଜ୍ୟୋସ୍ନା କିଛି ଅନ୍ଧକାର, ନୀଳଆଖିର ନଦୀ, କେତେ ଯେ ବସନ୍ତ ସତେ, ଜୀବନର ଜଟିଳତା, ଅନ୍ୟଏକ ଭାରତବର୍ଷ, ଅନେକ ତାରାରାତ୍ରି, ନିର୍ବାଚିତ ଗଳ୍ପ, ଗ୍ରହଣ, ଅଦିନବର୍ଷା, ପ୍ରେମଗଳ୍ପ, ସୂର୍ଯ୍ୟମୁଖୀ, ଈର୍ଷାର ଈଶ୍ବରୀ, ଲଳିତ ଲବଙ୍ଗଲତା, କଳିକାଳ, ଆଖିବୁଜିଦେଲେ ସତ୍ୟଯୁଗ ।

**ଭ୍ରମଣ ସାହିତ୍ୟ** - ଦ୍ୱାରକାଦର୍ଶନ, ତୀରେ ତୀରେ ତୀର୍ଥ

**ଜୀବନ ଚରିତ** - ବିଶ୍ୱାସାହିତ୍ୟର ବିଶ୍ୱକର୍ମା

**ଶିଶୁ ସାହିତ୍ୟ** - ମଣିଷ ଭିତରେ ମହାତ୍ମା, ଜନନାୟକ, ହସଖୁସି, କହିଜାଣିଲେ କଥାସୁନ୍ଦର ।

**ସମାଲୋଚନା** - ସାମ୍ପ୍ରତିକ ସାହିତ୍ୟ, ସାହିତ୍ୟର ସୂଚୀପତ୍ର, ଓଡ଼ିଆଉ ପନ୍ୟାସର ସମାଜ ତାତ୍ତ୍ୱିକ ରୂପରେଖ ।

# ଗୋଲକ ବିହାରୀ ଧଳ

## (୧୯୨୧ - ୧୯୭୪)

ଅନୁବାଦକ ତଥା ଭାଷାତତ୍ତ୍ୱବିଦ୍ ଭାବରେ ଗୋଲକ ବିହାରୀ ଧଳ ଜଣେ ସଫଳ ସ୍ରଷ୍ଟା । ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଅବସ୍ମରଣୀୟ । ୧୯୫୮ ମସିହାରେ ପ୍ରେମଚନ୍ଦଙ୍କ 'ଗୋଦାନ' ଉପନ୍ୟାସ ର ଅନୁବାଦ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ଅନୁବାଦ** - ଗୋଦାନ - (ପ୍ରେମଚନ୍ଦ), ପ୍ରେମାଶ୍ରମ ( ପ୍ରେମଚାନ୍ଦ), ଗବନ - (ପ୍ରେମଚନ୍ଦ), ପ୍ରେମଚନ୍ଦ ଗଳ୍ପମାଳା, ପ୍ରତିଜ୍ଞା, ବନ୍ଦୀ ନେହେରୁ - (ରାମଗୋପାଳ), ଆମସଂସ୍କୃତି - (ରାମଗୋପାଳ) ପୃଥିବୀର ନାରୀ - (ଜି-ଏଲିସନ୍‌ରେମଣ୍ଡ), ଭାରତର ମୋର ଘର (ସଛିଆ ବୋଲ୍‌ସ) କେନେଡ଼ି ଜୀବନୀ (ବୁସ୍‌ଲି) ବିସ୍ମୃତିର ଚିତ୍ର - (ଭଗବତୀ ଚରଣ ବର୍ମା), ସେ ଦିନର ଲକ୍ଷ୍ମୀ - (ଅବଦୁଲ ହଲୀମ୍ ଶରର), ଧୂଷର ପଣତ (ଫଣୀଶ୍ୱର ନାଥ ରେଣୁ) ।

**ଭ୍ରମଣ କାହାଣୀ** - ଲଣ୍ଡନ ଚିଠି, ଆମେରିକା ଅନୁଭୂତି, ତାଜମହଲ ଦେଶେ, ଗଙ୍ଗାଠାରୁ ଗୋଦାବରୀ, ବିଦେଶଯାତ୍ରା, ଆମର ଯାତ୍ରୀ, ଅମର କାହାଣୀ ।

**ଜୀମନ ଚରିତ** - ବନ୍ଦୀ ନେହେରୁ

**ଭାଷା ତାତ୍ତ୍ୱିକ ପ୍ରବନ୍ଧ ସଂକଳନ** - ମଣିଷର ଭାଷା, ଧ୍ୱନିବିଜ୍ଞାନ, ଭାଷା ଶାସ୍ତ୍ର ପରିଚୟ, ଇଂରାଜୀ ଉଚ୍ଚାରଣ ଶିକ୍ଷା, ପାଟିର କଥା, ପେଟର ପବନ ।

**ସାହିତ୍ୟିକ ସମାଲୋଚନା** - ଓଡ଼ିଆ କେବେ ? ବିଚାର ଆଲୋଚନା,

**ଶିଶୁ ସାହିତ୍ୟ** - ଗଳ୍ପ ପାଖୁଡ଼ା, ଶିଶୁ ଶିକ୍ଷା କଥା ମାଳା, ଟଙ୍କା ସୁନାର ସଂସାର, ନୂଆ ଗାଁ ନୂଆ ସଂସାର, ଆମ ସ୍ୱାଧୀନ ସଂସାର, ଟଙ୍କା କଥା କହିଲା, ଗଧ ଘୋଡ଼ା ପାଲିଟିଲା ।



# ଭଞ୍ଜ କିଶୋର ପଟ୍ଟନାୟକ

## (୧୯୨୨ - ୧୯୯୯)

ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟରେ ଭଞ୍ଜ କିଶୋର ଜଣେ ବିଶିଷ୍ଟ ସ୍ମରଣୀୟ ପ୍ରତିଭା । ବହୁ ନାଟକ ତଥା ଏକାଙ୍କିକା ରଚନାକରି ସେ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ସେ ୧୯୫୭ ମସିହାରେ 'ଅଗ୍ନି ପରୀକ୍ଷା' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୭୬ ମସିହାରେ ନାଟ୍ୟ ରଚନା ପାଇଁ ଓଡ଼ିଶା ସଂଗୀତନାଟକ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ନାଟକ** - ଝଡ଼ରାତି - ୧୯୩୯, ପ୍ରେମପୁଷ୍ପ - ୧୯୪୦, ପରିଣତି - ୧୯୪୩, ମୀମାଂସା - ୧୯୪୪, ଦାବୀ - ୧୯୪୫, ଲହର - ୧୯୪୬, ଅଦୃଶ୍ୟ ଚକ୍ର - ୧୯୪୬, ବେନାମୀ - ୧୯୪୬, ଶିକାରୀ - ୧୯୪୮, ତୋଫାନ - ୧୯୪୯, ଗରିବ - ୧୯୪୯, ଜୀବନ ଜୁଆ - ୧୯୫୦, ଆଲୋକ - ୧୯୫୦, ମାଣିକଯୋଡ଼ି - ୧୯୫୧, ସାଧବୀ - ୧୯୫୨, ବୈରାଗିର ସଂସାର - ୧୯୫୨, ଜୟମାଲ୍ୟ - ୧୯୫୨, ଅତିଥି - ୧୯୫୫, ପହିଲି ରଜ - ୧୯୫୬, କୂଳବୋହୂ - ୧୯୫୬, ସାଆନ୍ତ ଘର - ୧୯୫୭, ଉଣେଇଶ ଶହ ସତାବନ ନାଟକ, ପ୍ରତାପରୁଦ୍ର - ୧୯୫୮, ଅଗ୍ନିପରୀକ୍ଷା - ୧୯୫୮, ଅଶୋକସ୍ତମ୍ଭ - ୧୯୫୯, ସୁଖୀସଂସାର - ୧୯୫୧, ରାଜ ନର୍ତ୍ତକୀ - ୧୯୫୮, ଗୋଟିଏ ମା' କୋଟିଏ ସନ୍ତାନ - ୧୯୬୪, ଆକାଶ ଯେଉଁଠି ମାଟି ଛୁଏଁ - ୧୯୭୦, ଦେବଭୂମି - ୧୯୭୨, କାଶ୍ମୀରି ବେଗମ୍ ଗୁଲ୍‌ନାର ।

**ଏକାଙ୍କିକା** - ବାଣ ହରଣ, ମାଇଲଖୁଣ୍ଟ, ଦଶଭୁଜା, ଶ୍ରୀଗୁଣ୍ଡିଚା, ବାଜି ରାଉତ, କୋଣାର୍କ, ଜାଗରଣ, ଘରଣୀ, ସୁଲତାନା ରେଜିଆ, ସୁଖୀସଂସାର, ସାବିତ୍ରୀ, ଅଗ୍ନି ପତଙ୍ଗ, କର୍ଣ୍ଣ, ଖାନ୍‌ତଲାସ୍, ଦିଗଦର୍ଶନ ।

**ଆତ୍ମଚରିତ** - ଜୀବନର ଜୟଯାତ୍ରା ।



# ରାମଚନ୍ଦ୍ର ମିଶ୍ର
## (୧୯୨୦ - ୧୯୯୨)

ଓଡ଼ିଆ ନାଟ୍ୟ ସାହିତ୍ୟରେ ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଜଣେ ଅନନ୍ୟ ପ୍ରତିଭା । ସାମାଜିକ କଥାବସ୍ତୁକୁ ଆଧାରିତ କରି ବହୁନାଟକ ଓ ଏକାଙ୍କିକା ରଚନାକରି ନାଟ୍ୟ ସାହିତ୍ୟକୁ ସେ ସମୃଦ୍ଧକରିଛନ୍ତି । ୧୯୭୨ - ୭୩ ମସିହାରେ ସେ ନାଟ୍ୟରଚନା ପାଇଁ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୮୨ ମସିହାରେ ନାଟକ 'ନାଟକ ଗୀତିମତ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସେ ସମ୍ମାନିତ ହୋଇଛନ୍ତି ।

ନାଟକ - ଅଭିମାନ - ୧୯୪୨, ମ୍ୟାନେଜର - ୧୯୪୩, ମୂଲିଆ-୧୯୪୫, କବିସୂର୍ଯ୍ୟ - ୧୯୪୬, ଘରସଂସାର - ୧୯୫୦, ମଉଡ଼ମଣି - ୧୯୫୨, ସାଇ ପଡ଼ିଶା-୧୯୫୩, ନାଟକ ଗୀତିମତ୍‌-୧୯୫୩, ଭାଇ ଭାଉଜ - ୧୯୫୩, ଗୋଧୂଳି-୧୯୫୬, ସେବିକା - ୧୯୫୫, ଚାବୁକ - ୧୯୫୭, ପୁଆଣୀ ଘର-୧୯୬୨, ପର ପୁରୁଷ - ୧୯୬୮, ନରୋତ୍ତମ ଦାସ କହେ - ୧୯୬୯ ।

**ଏକାଙ୍କିକା** - ପ୍ରତୀକ୍ଷା-୧୯୫୮, ପ୍ରବାସୀ-୧୯୫୯, ପଡ଼ୋଶୀ-୧୯୫୦, ଆବିଷ୍କାର - ୧୯୭୦, ଜିସ ପୁଣି ଦେଖା ନଯାଏ - ୧୯୭୨, ମୃତ ଆସାମୀ - ୧୯୮୧, ରଜତ ଜୟନ୍ତୀ - ୧୯୮୫, ଆଶା ନିରାଶା - ୧୯୯୧, ମନ୍ତ୍ରୀ ଆସିବେ - ୧୯୯୧, ଭୋଟ ସଂସାର - ୧୯୯୧, ଅର୍ଥ ଅନର୍ଥ - ୧୯୯୨, ପାଞ୍ଚ ଏକର ଜମି - ୧୯୯୨ ।

**ଜୀବନୀ** - ନେତାଜୀ ସୁଭାଷ ।



# ସାତକଡ଼ି ହୋତା

## (୧୯୨୯)

ସ୍ୱାଧୀନ ଉତ୍ତର କଥାକାର ଭାବରେ ସାତକଡ଼ି ହୋତା ଜଣେ ସଫଳ ସ୍ରଷ୍ଟା, ବହୁ ଗଳ୍ପ, ଉପନ୍ୟାସର ରଚୟିତା ଭାବରେ ତାଙ୍କର ପ୍ରତିଭା ଅସାଧାରଣ ଅଟେ, ୧୯୮୭ ମସିହାରେ ସେ 'ଅଶାନ୍ତ ଅରଣ୍ୟ' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଉପନ୍ୟାସ - ବ୍ୟାକୁଳ ହୃଦୟ - ୧୯୬୬, ସ୍ୱପ୍ନ ଶିଉଳି - ୧୯୬୭, ଏତେ ସ୍ୱପ୍ନ ଏତେ ଆଲୋକ- ୧୯୭୬, ଅନେକ ଦିଗନ୍ତ- ୧୯୮୧, ଅଶାନ୍ତ ଅରଣ୍ୟ- ୧୯୮୪, ଶତାବ୍ଦୀର ଶୋଷ- ୧୯୮୬, ପ୍ରଥମ ଅଧ୍ୟାୟ -୧୯୮୭, ରାଜଧାନୀ ତରଙ୍ଗ - ୧୯୮୮, ପ୍ରତ୍ୟୁଷର ପ୍ରଶ୍ନ- ୧୯୮୮, ଭଙ୍ଗା କାଚ - ୧୯୮୯, କ୍ରୁଶବିଦ୍ଧ - ୧୯୮୯, ସୂର୍ଯ୍ୟ ଉଇଁଲେ ସ୍ୱପ୍ନ - ୧୯୮୯, ଅସମୟ - ୧୯୮୯, ମୁହାଁମୁହିଁ - ୧୯୯୨, ସତ୍ୟନଗର - ୧୯୯୩, ମୁକ୍ତିମନ୍ତ୍ର, ସଚିବାଳୟ, ମଧୁଛନ୍ଦା ।

ଗଳ୍ପ ସଂକଳନ : ଫୁଲର ଗୋଟିଏ ସୁରଭି, ଶୋଣିତର ସ୍ୱପ୍ନ, ବେଗମ୍ ସାହେବ, କିରିବୁରୁର ବନ୍ୟା, ଜଗନ୍ନାଥଙ୍କ ହସ, ନୀଳାଚଳକୁ ରାସ୍ତା, ମଧୁଲଗ୍ନ, ଅସତର୍କ ମୁହୂର୍ତ୍ତ, ମହାସ୍ନାନ, ଲଙ୍ଗଳା ରାଜା, ସାୟାହ୍ନର ଶୋଭା, ମୋ ଗଳ୍ପର ନାୟକ, ଶେଷ ସମ୍ବଳ, ସବାଶେଷରେ, ଦୀପ ଜଳିଲେ ଆଲୁଅ ।

ଭ୍ରମଣ କାହାଣୀ - 'କାଶ୍ମୀରରୁ କନ୍ୟାକୁମାରୀ'

ଆତ୍ମଜୀବନୀ - 'ମୋ ସମୟ'

# ଯଦୁନାଥ ଦାଶ ମହାପାତ୍ର

## (୧୯୭୯)

ଓଡ଼ିଆ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭାରୂପେ ଯଦୁନାଥ ଦାଶ ମହାପାତ୍ର ପରିଚିତ । ପ୍ରଥମତଃ କବି, ପରେ ଏହି କବି ମାନସ ଗଳ୍ପ-ଉପନ୍ୟାସ ତଥା ନାଟ୍ୟ ମାନସକୁ ଉନ୍ନୀତ ହୋଇଛି । ୧୯୭୬ ମସିହାରେ 'ଅଥବା ଅନ୍ଧାର' ନାଟକ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା, ୧୯୮୪-୮୫ ମସିହାରେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ସାର୍ଥକ କବିତା, ଯନ୍ତ୍ରଣାର ଅନ୍ୟନାମ ହେ ଜୀବନ, ହେ ଦୂରନ୍ତଝଡ଼, ମେଘବର୍ଣ୍ଣା, ଏବଂ ସମୁଦ୍ର ।

**ଗଳ୍ପ ସଂକଳନ** - ସୀତାର ଅଭିଶାପ, ନିଷିଦ୍ଧ ଚୌହଦୀ, ଗଳ୍ପ ଓ କବିତା, ମୁଖ ଦର୍ପଣ ।

**ନାଟକ** - ପରଶ ମଣି - ୧୯୫୯, ସୂର୍ଯ୍ୟ ମନ୍ଦିର - ୧୯୫୨, ଭୁଲିହୁଏନା-୧୯୫୮, କ୍ଷମାକରିବେ କି - ୧୯୭୦, ଅଥବା ଅନ୍ଧାର - ୧୯୭୪, ସେତୁବନ୍ଧ, ରାମରାଜ୍ୟ, ରାତ୍ରି ଗୋ ! ତୁମେ କଥା କୁହ, ନୂଆ କିଛି ନୁହେଁ, ଅଶାନ୍ତ ଦ୍ରୌପଦୀ, ପଥଭିକାରୀ, କଂସ, ବନ୍ଦୀ ବେଗମ ବାଦଶାହ ।

**ଉପନ୍ୟାସ** - ମଣିଷର ରାଜ୍ୟର ପଶୁ, ଗ୍ରାମ୍ୟନଦୀର ତୀରେ, ନୀଡ଼ରସନ୍ଧାନେ, ଭଙ୍ଗାଘର, ଭଗ୍ନମାନସୀ, ଆଦ୍ୟମଧ୍ୟପ୍ରାନ୍ତ, ସନ୍ତାନସେତୁ, ଲୁହରଫୁଲ, ରାହୁ ମୁକ୍ତି, ଏଦେହଦେବାଳୟ, କାହାଣୀ କୁବେର ପୁତ୍ରର, ନିହତଚନ୍ଦ୍ରମା, ରାଜଅତିଥି, ସୁଖ, ମାଘଶେଷ, ମେଘଶେଷ, ଅନ୍ୟାନ୍ୟ ଓ ପ୍ରେମର ସମ୍ବୋଧନ ।

**ସମାଲୋଚନା** - ଓଡ଼ିଆ ସାହିତ୍ୟରେ ତ୍ରିବେଣୀଯୁଗ ।

# ମନମୋହନ ଚୌଧୁରୀ

## (୧୯୧୫)

ଓଡ଼ିଆ ସାହିତ୍ୟରେ ଜଣେ ସମାଜ ସଚେତନ ଶିଳ୍ପୀ ଭାବରେ ମନମୋହନ ଚୌଧୁରୀ ପରିଚିତ । ବିନୋବାଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ବହୁ ପୁସ୍ତକ ରଚନା କରି ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ୧୯୮୨ ମସିହାରେ 'ହାଟ ବଜାରର ବ୍ରହ୍ମଜ୍ଞାନ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୭ ମସିହାରେ 'କସ୍ତୁରୀ ମୃଗସମ' ପୁସ୍ତକ ପାଇଁ ଶାରଳା ପୁରସ୍କାର ସମ୍ମାନକର ସମ୍ମାନିତ ହୋଇଛନ୍ତି ।

**ଭ୍ରମଣ କାହାଣୀ** - ୟୁରୋପ ଯାତ୍ରାର ଡାଏରୀ, ଆମେରିକା କଥା ।

**ଅନ୍ୟାନ୍ୟ ରଚନା** - ସତ୍ୟାଗ୍ରହ, ହାଟ ବଜାରର ବ୍ରହ୍ମଜ୍ଞାନ, ଆଜିର ସଙ୍କଟ, ଲୋକେ କେଉଁଠି, ଜନତାର ରାଜ୍ୟ, ସର୍ବୋଦୟ ରାଜନୈତିକ ଦର୍ଶନ, ପରମ ମଣିଷର ସନ୍ଧାନେ, କସ୍ତୁରୀ ମୃଗସମ ।

**ଅନୁବାଦ** - ଆମେ ତୃତୀୟ ବ୍ୟକ୍ତି (ବିନୋବା )



# ତରୁଣକାନ୍ତି ମିଶ୍ର

## (୧୯୫୦)

ଆଧୁନିକ ଗଳ୍ପ ସାହିତ୍ୟରେ ଜଣେ ଅନନ୍ୟ ପ୍ରତିଭା ଭାବରେ ତରୁଣକାନ୍ତି ମିଶ୍ର ପରିଚିତ । ସେ ୧୯୯୭ ମସିହାରେ ଗଳ୍ପ ରଚନା ପାଇଁ ଝଙ୍କାର ପୁରସ୍କାର, ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ 'ବିତଂଶ' ଗଳ୍ପ ସଂକଳନ ପାଇଁ ପୁରସ୍କୃତ ହୋଇଛନ୍ତି ୨୦୦୧ ମସିହାରେ 'ଆକାଶ ସେତୁ' ଗଳ୍ପ ପୁସ୍ତକ ପାଇଁ ସେ ଶାରଳା ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଆବର୍ତ୍ତର ଦୁଇଟି ସ୍ୱର - (୧୯୬୯)

ନିଃ ସଙ୍ଗତାର ସ୍ୱର - ୧୯୮୦, କୋମଳ ଗାନ୍ଧାର - ୧୯୮୪, ବହୁବ୍ରୀହି - ୧୯୮୮, ବତିଂସ - ୧୯୯୬, ପାରାଡାଇଜ୍ ପକ୍ଷୀ ଓ ଜଣେ ନିରସ୍ତ୍ର ଆତତାୟୀ - ୧୯୯୪, ଆକାଶ ସେତୁ ୧୯୯୭, ପ୍ରଜାପତିର ଡ଼େଣା ନାହିଁ - ୧୯୯୭ ।

## ଡଃ ନଟବର ସାମନ୍ତରାୟ

## (୧୯୧୮ - ୨୦୦୦)

ଓଡ଼ିଆ ସମାଲୋଚନା ସାହିତ୍ୟରେ ଜଣେ ଲବ୍ଧ ପ୍ରତିଷ୍ଠିତ ଗବେଷକ ଭାବରେ ଡଃ ନଟବର ସାମନ୍ତରାୟ ପରିଚିତ । ଗବେଷଣାଧର୍ମୀ ଆଲୋଚନାରେ ତାଙ୍କ ପ୍ରତିଭାର ପଟାନ୍ତର ନାହିଁ । ଓଡ଼ିଆ ସମାଲୋଚନା ସାହିତ୍ୟକୁ ତାଙ୍କର ଅବଦାନ ଅବିସ୍ମରଣୀୟ । ୧୯୭୩ ମସିହାରେ ସେ 'ଝଙ୍କାର' ପୁରସ୍କାର ୧୯୮୫ ମସିହାରେ 'ବିଷୁବ' ପୁରସ୍କାର, ୧୯୮୪ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରଦତ୍ତ 'ଅତିବଡ଼ୀ ଜଗନ୍ନାଥ ପୁରସ୍କାର' ୧୯୬୦ ମସିହାରେ ସମାଲୋଚନା ପୁସ୍ତକ 'ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦) ଗବେଷଣା ସନ୍ଦର୍ଭରେ ସେ ଡକ୍ଟରେଟ୍ ଉପାଧି ଲାଭ କରିଛନ୍ତି ।

**ସମାଲୋଚନା ପୁସ୍ତକ:** ଆଧୁନିକ ଓଡ଼ିଆ ସାହିତ୍ୟର ଦିଗଦର୍ଶନ, ଓଡ଼ିଆ ବୈଷ୍ଣବ ସାହିତ୍ୟ, ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ରାଧାନାଥ ଓ ଚିଲିକା କାବ୍ୟ, ଗଙ୍ଗାଧର ସାହିତ୍ୟ ସମୀକ୍ଷା, ସାହିତ୍ୟାଦର୍ଶ, ଆଧୁନିକ ସାହିତ୍ୟର ଭିତ୍ତିଭୂମି, ବ୍ୟାସକବି ଫକୀର ମୋହନ, ଓଡ଼ିଆପଲ୍ଲୀ ସାହିତ୍ୟ, ନନ୍ଦକିଶୋର ସାହିତ୍ୟ ସମୀକ୍ଷା, ବଡ଼ଜେନା ସାହିତ୍ୟ ସମୀକ୍ଷା, ସଖାହୀନ ପଞ୍ଚସଖା, ଓଡ଼ିଆ ସାହିତ୍ୟରେ କାଳ ଓ କଳା, ଆଧୁନିକ ଓଡ଼ିଆ ସାହିତ୍ୟର ବିକାଶର ପୃଷ୍ଠଭୂମି, ଓଡ଼ିଆ ଧର୍ମ ଧାରାରେ ପଞ୍ଚସଖା ପରିକଳ୍ପନା, ପଣ୍ଡିତ ଗୋପବନ୍ଧୁଙ୍କ କାବ୍ୟସୃଷ୍ଟି ମାନସ, ଓଡ଼ିଆ ସାହିତ୍ୟରେ ସ୍ୱର ପରିବର୍ତ୍ତନ, ମୁଁ କିପରି ଗବେଷଣା କଲି, ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ,

**ଗବେଷଣା ସନ୍ଦର୍ଭ** - ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ - ୧୯୨୦)

## ବେଣୁଧର ରାଉତ

## (୧୯୨୬)

ଆଧୁନିକ ଓଡ଼ିଆ କବିତାରେ ବେଣୁଧର ରାଉତ ଜଣେ ବିଶିଷ୍ଟ ପ୍ରତିଭା । ସୃଷ୍ଟି ସୀମିତ ହେଲେ ହେଁ ସିଦ୍ଧି ଯେ ଅଧିକ ଏହା ନିଃସନ୍ଦେହ । 'ପିଙ୍ଗଳାର ସୂର୍ଯ୍ୟ' କାବ୍ୟପାଇଁ ସେ ୧୯୬୫ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟରେ ମଧ୍ୟ ସେ ଜଣେ ସାର୍ଥକ ପ୍ରାବନ୍ଧିକ ଭାବରେ ପରିଚିତ । ବହୁ ଆଲୋଚନା ମୂଳକ ପ୍ରବନ୍ଧ ରଚନା କରି ସେ ଯଶସ୍ୱୀ ହୋଇଛନ୍ତି ।

**କବିତା ସଂକଳନ** - ପିଙ୍ଗଳାର ସୂର୍ଯ୍ୟ -, ଏକତାରା ଦୁଇତାରା,

**ସମାଲୋଚନା** - ଭିନ୍ନଦର୍ପଣ,

# ରବୀନ୍ଦ୍ରନାଥ ସିଂହ

## ୧୯୩୨

ଆଧୁନିକ ଓଡ଼ିଆ କବିତାରେ ବିପ୍ଳବୀ କବି ରବିନ୍ଦ୍ରନାଥ ସିଂହ ଜଣେ ବିଶିଷ୍ଟ ପ୍ରତିଭା । ବାମପନ୍ଥୀ ଚିନ୍ତାଧାରା ତଥା ସମାଜବାଦୀ ଚେତନା ସମ୍ବଳିତ ବହୁ କବିତାର ରଚୟିତା ଭାବେ ସେ ଯଶସ୍ୱୀ ହୋଇ ପାରିଛନ୍ତି । ଏକ ଶୋଷଣମୁକ୍ତ ଶାନ୍ତ ସମାହିତ ସମାଜ ଜୀବନପାଇଁ କବିମାନସ ଆଶାୟୀ ହୋଇଛି । ୧୯୬୧ ମସିହାରେ, 'ଚରମପତ୍ର' କାବ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୯ରେ ଝଙ୍କାର ପୁରସ୍କାର, ୧୯୯୬ ମସିହାରେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**କବିତାସଂକଳନ** - ପଥ ପ୍ରାନ୍ତର କବିତା, ଚରମ ପତ୍ର, ଶିଥିଳ ବଲ୍ଗା, ଅପ୍ରୀତିକର କବିତା, ଜ୍ୱାଳାର ମାଳା, କ୍ଷତ, ବିଷବାଣୀ, ଝଡ଼, ଭ୍ରୁକୁଟି, ଦୁର୍ଗମ ଗିରି, ସର୍ବହରା, ଅନାର୍ଯ୍ୟର ଚର୍ଯ୍ୟାପଦ, ତାରକାର ଲୁହ, ଅଗ୍ନିବେଦ, ଜମାନବନ୍ଦୀ, କେବଳ ସଂଗ୍ରାମ, ଭଙ୍ଗା ହାତର କବିତା, ଝଡ଼ ଗାନ୍ଧାର, ଲୋହିତ କ୍ରାନ୍ତି, ନବମ ସ୍ୱର୍ଗ, ରବିସିଂହଙ୍କ ପ୍ରେମ କବିତା, କ୍ରାନ୍ତିକା ମୋଦୀ, ଲାଲ୍ ପାଗୋଡ଼ାର ପ୍ରେତ ଓ ଅନ୍ୟାନ୍ୟ କବିତା, ବିଦୀର୍ଣ୍ଣ, ପାଦଟୀକା ।

**ସମାଲୋଚନା ପୁସ୍ତକ** - ''ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ'' ଓଡ଼ିଆ ସାହିତ୍ୟର ଧର୍ଷଣ, ରବିସିଂ ଉବାଚ,

**ଜୀବନୀ** - ମାଝି - (ସ୍ୱାଧୀନତା ସଂଗ୍ରାମର କାହାଣୀ)

**ଅନୁବାଦ** - ଅନ୍ଧକାରର ସଂଗୀତ, (କରୋଲୋଙ୍କ - The Blind Musician)

**ବିରସକାହାଣୀ** - (ଚେକ୍‌ଭଙ୍କ - Dulls' story)

ନାୟକ ଆମସମୟର, (ମିଖାଇଲଲେରେ ମାଣ୍ଟଭଙ୍କ - A Hero of our time)

ବୋତଲଭୂତ - (ଷ୍ଟିଫେନ୍‌ସନ୍‌ଙ୍କ - Bottle Imph)

ପୂର୍ବକ୍ଷଣ - (Turgrev ଙ୍କ On the Eve)

ମୋଗଲଙ୍କ ଉପନ୍ୟାସ ଭାରସ୍ ଗୁଲବାର ଅନୁବାଦ, ହୋଚ୍‌ମିନଙ୍କ କବିତାର ଅନୁବାଦ ଇତ୍ୟାଦି ।

# ବାମା ଚରଣ ମିତ୍ର

## (୧୯୧୫ - ୭୬)

ଏକଧାରରେ ଜଣେ ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ ଓ ରମ୍ୟରଚୟିତା ଭାବେ ବାମାଚରଣମିତ୍ର ଓଡ଼ିଆ ସାହିତ୍ୟରେ ପରିଚିତ । ତାଙ୍କ ରଚନାରେ ଗଭୀର ମାନବବାଦ ତଥା ମୌଳିକ ଚିନ୍ତାଧାରା ଦେଖିବାକୁ ମିଳେ । ୧୯୭୨ ମସିହାରେ 'ଏଣ୍ଡୁଷ୍ଟ ତେଣ୍ଡୁଷ୍ଟ' ପ୍ରବନ୍ଧ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇଛନ୍ତି ।

**ଗଳ୍ପ ସଂକଳନ** - କୀର୍ତ୍ତିଯସ୍ୟ, ନରଛଞ୍ଚାଣ, ପରାଗ, ପାଷାଣର ପ୍ରାଣ, ଅସୀମ, ବଟମହାପୁରୁଷ,

**ଉପନ୍ୟାସ** - ଚନ୍ଦ୍ର ଓ ଚମ୍ପା

**ପ୍ରବନ୍ଧ ସଂକଳନ** - ସ୍ୱପ୍ନସିଦ୍ଧ, ଏଣ୍ଡୁଷ୍ଟ ତେଣ୍ଡୁଷ୍ଟ, ସାହିତ୍ୟରେ ଜୀବନ ଓ କଳା ।



# ବସନ୍ତ ଶତପଥୀ

## ୧୯୧୩ - ୧୯୯୪

ଓଡ଼ିଆ ସାହିତ୍ୟରେ ଜଣେ ସାର୍ଥକ ଶିଳ୍ପୀ ଭାବରେ ବସନ୍ତ ଶତପଥୀ ପରିଚିତ । ଗାଳ୍ପିକ ତଥା ରମ୍ୟରଚୟିତା ଭାବରେ ତାଙ୍କର ପ୍ରତିଭା ଅନନ୍ୟ, ଅନବଦ୍ୟ । ୧୯୭୯ ମସିହାରେ ସେ ଝଙ୍କାର ପୁରସ୍କାର, ୧୯୬୮ ମସିହାରେ ସେ 'ଏଣ୍ଟିରୋମାଣ୍ଟିକ୍' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ରମ୍ୟରଚନା ସଂକଳନ ରୂପେ ପ୍ରକାଶିତ ହୋଇ ନଥିଲେ ହେଁ ସେ ବହୁ ରମ୍ୟ ରଚନା ଲେଖି ଯଶସ୍ୱୀ ହୋଇଛନ୍ତି । ସେଗୁଡ଼ିକ ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶିତ ହୋଇଛି । ରମ୍ୟରଚନାଗୁଡ଼ିକ କେତେକ ଅନୁବାଦ ମୂଳକ ଓ ଅନ୍ୟାନ୍ୟଗୁଡ଼ିକ ତାଙ୍କ ସୃଜନଶୀଳ ସୃଷ୍ଟି ରୂପେ ଜଣାଯାଏ ।

ସଂପାଦନା - ସଞ୍ଚୟନ (ଓଡ଼ିଆ କବିତାର ସଂକଳନ)
ଅନୁବାଦ - ନବନାଟିକା - ୧୯୬୦ (ଶ୍ରେଷ୍ଠ ଇଂରାଜୀ ଏକାଙ୍କିକାର ସାବଲୀଳ ଅନୁବାଦ)
ଚମ୍ପା - ୧୯୭୦ - ଛ'ମାଣ ଆଠଗୁଣ୍ଠର ନାଟ୍ୟରୂପ
୧୯୭୭ - ଲେମ୍ବଙ୍କ ସେକ୍ସପିୟର କାହାଣୀ ମାଳାର ଅନୁବାଦ
୧୯୭୯ - ରାଜା - (ରବୀନ୍ଦ୍ରନାଥଙ୍କ ପଞ୍ଚନାଟକର ଅନୁବାଦ)
୧୯୭୦ - ଇଉଲିସେସ୍‌ଙ୍କ ଓ ମାନ୍‌ଚେଥ୍ ସେନ୍‌ଙ୍କ ଭ୍ରମଣକାହାଣୀ ଦୁଇଟିର ଅନୁବାଦ ।
ଗଳ୍ପ ସଂକଳନ - ଏଣ୍ଟିରୋମାଣ୍ଟିକ୍ - ୧୯୬୬, ଗଂଗା ଓ ଗାଙ୍ଗୀ - ୧୯୮୧
ହାଇଦ୍ରାବାଦ ଅଙ୍କୁର - ୧୯୮୨, ମାଂସାଶୀଙ୍କ ଉଦ୍ଦେଶ୍ୟରେ (୧୯୮୨)
ଗୋଟିଏ ଆଳୁ - ୧୯୮୨, ନୀଡ଼ାଶ୍ରୟୀ - ୧୯୮୩
ଆକାଶୀଫୁଲ - ୧୯୮୩, ଅଜାଗା ଘା' - ୧୯୮୩
ମେଜର ଅପରେଶନ - ୧୯୯୧ ।

## ବଂଶୀଧର ମହାନ୍ତି

### (୧୯୨୪ - ୧୯୯୦)

ଓଡ଼ିଆ ସମାଲୋଚନା ସାହିତ୍ୟରେ ଡଃ ବଂଶୀଧର ମହାନ୍ତି ଜଣେ ସ୍ମରଣୀୟ ପ୍ରତିଭା । କେତେକ ସମୀକ୍ଷାତ୍ମକ ଆଲୋଚନା ଓ କେତେକ ଭାଷା ସମ୍ବନ୍ଧରେ ଆଲୋଚନା ଦେଖିବାକୁ ମିଳେ । ସେ ୧୯୭୦ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୬ ମସିହାରେ 'ବିଷୁବ' ପୁରସ୍କାର ଲାଭ କରିଛନ୍ତି । ୧୯୭୩ ମସିହାରେ ସମାଲୋଚନା ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ସମାଲୋଚନା ପୁସ୍ତକ** - ଓଡ଼ିଆ ସାହିତ୍ୟରେ ଇତିହାସ - ୧ମ ଖଣ୍ଡ, ୨ୟଖଣ୍ଡ ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭ ଦାନ, ଓଡ଼ିଶାର ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ, ରସକଲ୍ଲୋଳ ପରିଚୟ, ବଦ୍ଧ ଚିନ୍ତାମଣି ପରିଚୟ, ଶ୍ରୀଜଗନ୍ନାଥ, ଭକ୍ତକବି ଜଗନ୍ନାଥ ଦାସ, ଓଡ଼ିଆ ଭାଷା, ସଂସ୍କୃତି ଓ ସାହିତ୍ୟ, ଓଡ଼ିଆ ଭାଷା ଆନ୍ଦୋଳନ, ଓଡ଼ିଆଭାଷା ତତ୍ତ୍ୱର ଭୂମିକା, ଓଡ଼ିଆ ଭାଷାର ଉତ୍ପତ୍ତି କ୍ରମବିକାଶ ।

## ଚୌଧୁରୀ ହେମକାନ୍ତ ମିଶ୍ର

### (୧୯୩୪)

ଜଣେ ବ୍ୟଙ୍ଗ ଗଳ୍ପକାର ଭାବରେ ଚୌଧୁରୀ ହେମକାନ୍ତ ମିଶ୍ର ପରିଚିତ । ଓଡ଼ିଆ ଗଳ୍ପ ସାହିତ୍ୟକୁ ତାଙ୍କର ଅବଦାନ ଅନନ୍ୟ । ୧୯୭୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସେ 'ନିଷିଦ୍ଧ ପୁସ୍ତକ' ଗଳ୍ପ ସଂକଳନ ପାଇଁ ସମ୍ମାନିତ ହୋଇଛନ୍ତି ।

**ଗଳ୍ପ ସଂକଳନ** - ଅଘଟଣ ସଂକଳନ, ହସକୁରା କଥା ମାନ, ନିଷିଦ୍ଧ ପୁସ୍ତକ, କୁରୁକିଆଗଳ୍ପ, ହେମକାନ୍ତଙ୍କ ହସଗୋଲା, ହାସପରିହାସ, ଶ୍ରେଷ୍ଠ ବ୍ୟଙ୍ଗ ସଂକଳନ, ଚୌଧୁରୀ ହେମକାନ୍ତଙ୍କ ଶ୍ରେଷ୍ଠଗଳ୍ପ ।



# ଚିନ୍ତାମଣି ବେହେରା

## (୧୯୨୮)

ଆଧୁନିକ ଓଡ଼ିଆ କାବ୍ୟ ଚେତନାର ଜଣେ ସାର୍ଥକ ଶିଳ୍ପୀ ଭାବରେ ଚିନ୍ତାମଣି ବେହେରା ପରିଚିତ । ନିବିଡ଼ ଜୀବନବୋଧ ସହିତ କଳାତ୍ମକ ଅଭିବ୍ୟକ୍ତି ତାଙ୍କ କବିତାର ମୁଖ୍ୟ ଆକର୍ଷଣ । ଓଡ଼ିଆ ସମାଲୋଚନା ସାହିତ୍ୟକୁ ତାଙ୍କର ଅବଦାନ ମଧ୍ୟ ଅବିସ୍ମରଣୀୟ । ତାଙ୍କ ପ୍ରତିଭାର ପଟାନ୍ତର ନାହିଁ । ସେ ୧୯୨୭ ମସିହାରେ 'ଝଙ୍କାର' ପୁରସ୍କାର ୧୯୯୦ ମସିହାରେ ବିଷୁବ ପୁରସ୍କାର, ୧୯୭୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା କବିତା ସଂକଳନ 'ତୃତୀୟ ଚକ୍ଷୁ' ଓ ୧୯୮୫ ମସିହାରେ ସମାଲୋଚନା ପୁସ୍ତକ 'କଳାଦୃଷ୍ଟି'ପାଇଁ ପୁଣିଥରେ ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ଶ୍ୱେତପଦ୍ମା, ସ୍ୱସ୍ତିକା, ନୂତନ ସ୍ୱାକ୍ଷର, ତୃତୀୟ ଚକ୍ଷୁ, ନୀଳ ଲୋହିତ, ହେ ବୈଦେହୀ ଭୁଲିଯାଅ, ନିଜେ ନିଜର ସାକ୍ଷୀ ।

ସମାଲୋଚନା - କାବ୍ୟ କଳାକାର, ବିଦଗ୍ଧ ପାଠକ, କଳାଦୃଷ୍ଟି, ଆଧୁନିକତାର କ,ଖ ଓ ଅନ୍ୟାନ୍ୟ ଆଲୋଚନା, ସାହିତ୍ୟଚିନ୍ତା, ଚିତ୍ର ଓ ଚରିତ୍ର ।



# ଡଃ ରତ୍ନାକର ଚଇନି

## ୧୯୪୫

ଓଡ଼ିଆ ନବନାଟ୍ୟ ଆନ୍ଦୋଳନରେ ଜଣେ ବଳିଷ୍ଠ ସୂତ୍ରଧର ତଥା ଗବେଷକ, ସମାଲୋଚକ ଭାବରେ ରତ୍ନାକର ଚଇନି ବେଶ୍ ଆଦୃତ ହୋଇପାରିଛନ୍ତି । ପରୀକ୍ଷାଧର୍ମୀ ନାଟକ ରଚନାରେ ସେ ସିଦ୍ଧହସ୍ତ । ସେ ୧୯୮୨ ମସିହାରେ 'ଝଙ୍କାର' ପୁରସ୍କାର, ୧୯୯୫ ମସିହାରେ ବିଷୁବ ପୁରସ୍କାର, ୧୯୭୨-୭୮ ମସିହାରେ 'କଳଙ୍କିତସୂର୍ଯ୍ୟ' ନାଟକ ରଚନା ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ନାଟକ :** ରଂଗତରଗ, ନଚିକେତା ଉବାଚ, ମୁଖା, ଶୂନ୍ୟତାର ସିଡ଼ି ଅସ୍ତରାଗର ଚନ୍ଦ୍ର, ଶେଷ ଅଶ୍ରୁ, ମଞ୍ଚନାୟିକା, ଅପଦେବତା, ରାଜହଂସ, ପୁନଶ୍ଚ ପୃଥିବୀ, ଶୂନ୍ୟତାର ସିଡ଼ି, ଅଥଚ ଚାଣକ୍ୟ, ଆଶାବୃନ୍ଦାବନ, ଖୋଲାଆକାଶ, ଯକ୍ଷ ଚରିତ, ନାଗଫେଣୀ ରତୁ, ଅସ୍ଥିରେ ଉପତ୍ୟକା, ଅନ୍ଧକାରର ସୂର୍ଯ୍ୟ ମୁଖୀ, ନିଜନିଜକୁ କୁରୁକ୍ଷେତ୍ର, ସୁନାକଳସ, ଆହେ ଆପଣେ, ଅନେକ ନିଃଶ୍ୱାସର ଆକାଶ ।

**ଏକାଙ୍କିକା** - କଳଙ୍କିତ ସୂର୍ଯ୍ୟ, ଅନେକ କାକ୍‌ଟସ୍ ।

**ଉପନ୍ୟାସ** - ଲହୁଲହରୀ ତଳେ, ରାତ୍ରୀର ରଜନୀଗନ୍ଧା, ବିଷବଳୟ, ଫୁଲର ଫଗୁଣ, ଅବ୍ୟକ୍ତ ଗୋଧୂଳି, **ଜୀବନୀ** - 'ସନ୍ଥକବି ଅଚ୍ୟୁତାନନ୍ଦ'

**ଗଳ୍ପ ସଂକଳନ** - ସୂର୍ଯ୍ୟାସ୍ତର ଉପବନ, ଋତୁର ନାମ ପ୍ରିୟା, କହଳଲିତା,

**ସମାଲୋଚନା** - ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ, ଭଜନୋଟ୍ୟ ପରମ୍ପରା, କବିଗୋପାଳକୃଷ୍ଣ ଓ ତାଙ୍କ ପଦ୍ୟାବଳୀ, ଅଚ୍ୟୁତାନନ୍ଦ ଗୀତାବଳୀ, ମୋ ଆଖିର ମୂଳ (ପ୍ରବନ୍ଧ ସଂକଳନ)



# ଦାଶରଥି ଦାଶ

## ୧୯୩୬

ଓଡ଼ିଆ ସମାଲୋଚନା ସାହିତ୍ୟରେ ଜଣେ ଲବ୍ଧ ପ୍ରତିଷ୍ଠିତ ପ୍ରତିଭା ରୂପେ ଦାଶରଥି ଦାଶ ପରିଚିତ । ସାହିତ୍ୟ-ସମାଲୋଚନା ତଥା ଗବେଷକ ଭାବରେ ତାଙ୍କ ପ୍ରତିଭା ଅନବଦ୍ୟ ଅଟେ । ସେ ୧୯୮୦ ମସିହାରେ 'ଝଙ୍କାର' ପୁରସ୍କାର, ୧୯୭୬ ମସିହାରେ 'କାବ୍ୟସମ୍ବାଦ' ସମାଲୋଚନା ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ସମାଲୋଚନା** - କାବ୍ୟ ସମ୍ବାଦ, ସାହିତ୍ୟ ସନ୍ଧାନ, ଆଧୁନିକ କାବ୍ୟ ଜିଜ୍ଞାସା - ଚିତ୍ରକଳ୍ପ, କବିସୂର୍ଯ୍ୟ କାବ୍ୟବିଭା, ମୃତ୍ୟୁଲୋକରେ ଋତୁ ସପ୍ତମ, ନାନା ନିବନ୍ଧ, ଚିହ୍ନାମାଟି ଅଚିହ୍ନା ଆକାଶ, ବିବିଧ ପ୍ରସ୍ତାବ, ସାହିତ୍ୟ ବିବେକ ।

# ଭୁବନେଶ୍ୱର ବେହେରା

## (୧୯୧୬)

ଆଧୁନିକ ଓଡ଼ିଆ ସାହିତ୍ୟରେ ପ୍ରବନ୍ଧ ଓ ରମ୍ୟରଚନା କ୍ଷେତ୍ରରେ ପ୍ରଫେସର ଭୁବନେଶ୍ୱର ବେହେରା ଜଣେ ଅନନ୍ୟ ପ୍ରତିଭା । ସମ୍ବଲପୁର ବିଶ୍ୱବିଦ୍ୟାଳୟରେ କୁଳପତି ତଥା 'ସପ୍ତର୍ଷି' ପତ୍ରିକାର ସଂପାଦକ ଭାବରେ ସେ ବେଶ୍ ଲୋକପ୍ରିୟତା ଅର୍ଜନ କରିଛନ୍ତି । ଗାଳ୍ପିକ ଭାବରେ ମଧ୍ୟ ତାଙ୍କର ସଫଳତା ରହିଛି । ବ୍ୟଙ୍ଗ-ବିଦ୍ରୂପ ମାଧ୍ୟମରେ ଏକ ସୁସ୍ଥ ସମାଜ ଜୀବନ ଗଠନ ପାଇଁ ସ୍ରଷ୍ଟାମାନସ ଆଶାୟୀ । ସେ ୧୯୭୬ ମସିହାରେ 'ଝଙ୍କାର', ୧୯୭୭-୭୮ ମସିହାରେ ତାଙ୍କର ପ୍ରବନ୍ଧ ସଂକଳନ 'ଶୁଣପରୀକ୍ଷ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଓ ୧୯୯୪ ମସିହାରେ 'ଗାଁର ଡାକ' ଆତ୍ମଜୀବନ ଚରିତ ପାଇଁ ସାରଳା ପୁରସ୍କାର ରେ ସମ୍ମାନିତ ହୋଇଛନ୍ତି ।

**ଭ୍ରମଣ କାହାଣୀ** - 'ଦକ୍ଷିଣ ଆଫ୍ରିକାରେ ଓଡ଼ିଆ ଡ଼ିଙ୍ଗି',

**ଜୀବନଚରିତ** - 'ଗାଁରଡାକ',

**ପ୍ରବନ୍ଧ ଓ ରମ୍ୟରଚନା** - ଶୁଣପରୀକ୍ଷ, କଥା ଓ ଲଥା, ସହାବସ୍ଥାନ, ଫର୍‌ଫର୍‌ଉଡ଼େ, ଆନସାରୀ ଚାଚା, ଚାଲି ନଜାଣି, କହ ମନ୍ତ୍ରୀବର ।



# 'ରାମକୃଷ୍ଣ ନନ୍ଦ
## (୧୯୦୬ -୧୯୯୪)

ଜଣେ ବିଶିଷ୍ଟ ଶିକ୍ଷାବିତ୍ ତଥା ଶିଶୁ ସାହିତ୍ୟିକ ଭାବରେ ରାମକୃଷ୍ଣ ନନ୍ଦ ବେଶ୍ ସୁନାମ୍ ଅର୍ଜନ କରିଛନ୍ତି । ପ୍ରାର୍ଥନା - ''ଆହେ ଦୟା ମୟ ବିଶ୍ୱବିହାରୀ'' ର ରଚୟିତା ଭାବରେ ସେ ଚିର ଅମର ହେଇ ରହିବେ । ଜ୍ଞାନବିଜ୍ଞାନ ମୂଳକ ମାସିକ ପତ୍ରିକା - 'ସଂସାର'ର ପ୍ରତିଷ୍ଠାତା ସମ୍ପାଦକ ଭାବରେ ସେ ଖ୍ୟାତ । ଶିଶୁ କବିତା ଓ ଶିଶୁ ଗଳ୍ପ ପାଇଁ ସେ ଆଦୃତ । ୧୯୭୭-୭୮ ମସିହାରେ ତାଙ୍କର କବିତା ସଂକଳନ 'ଝୁମୁକା' ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

ଆତ୍ମଜୀବନୀ - 'ଜୀବନତରଙ୍ଗ'

ଜୀବନୀ - ତୁଳସୀଦାସ

ପାଠ୍ୟପୁସ୍ତକ - ପାଠସୋପାନ (୩ଖଣ୍ଡ) ସାହିତ୍ୟ ସୋପାନ (୪ଖଣ୍ଡ)

ସାହିତ୍ୟବୋଧ - ୨ଖଣ୍ଡ,

ଗଳ୍ପ ପୁସ୍ତକ - ସୁନାପାହାଚ, ରତ୍ନ ପାଖୁଡା, ଅଦେଖାବଣର ଫୁଲ, ପଞ୍ଚତନ୍ତ୍ର କାହାଣୀ

ଅନ୍ୟାନ୍ୟ ରଚନା - ଆମ ଜାତୀୟ ପଶୁ,

ଆମ ଜାତୀୟ ପକ୍ଷୀ, କବିତା ସଂକଳନ - 'ଝୁମୁକା'

# ବିଜୟ ମିଶ୍ର

**୧୯୩୬**

ନବନାଟ୍ୟ ଆନ୍ଦୋଳନରେ ଅନ୍ୟତମ ପ୍ରତିଭା ଭାବରେ ନାଟ୍ୟକାର ବିଜୟ ମିଶ୍ର ପରିଚିତ । ଓଡ଼ିଆ ନାଟକରେ ବିଭିନ୍ନ ପରୀକ୍ଷା-ନିରୀକ୍ଷା କରି ସେ ସଫଳ ହୋଇଛନ୍ତି । ଓଡ଼ିଆ ନାଟ୍ୟ ସାହିତ୍ୟକୁ ତାଙ୍କର ଅବଦାନ ଯଥେଷ୍ଟ ରହିଛି । ସେ ୧୯୭୮ ମସିହାରେ 'ଯାଦୁକର' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୮-୮୯ ବର୍ଷରେ ଓଡ଼ିଆ ସଂଗୀତ ନାଟକ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ନାଟକ** - ପଞ୍ଚଶାୟକ, ଏକାକୀ, ଆର୍ତ୍ତନାଦ, ହଂସ ବଳାକା, ଜନନୀ, ଅଶାନ୍ତଗ୍ରହ, ତିମିରତୀର୍ଥ, ପ୍ରତୀକ୍ଷା, ଆହ୍ୱାନ, ଅପ୍ରତିହତ, ଶୃଙ୍ଖଳା, ପରଶୁରାମ, ବାଦ୍‌ଶାହା, ଯାଯାବର, ହେ ସ୍ୱର୍ଗ ବିଦାୟ, ଅସତ୍ୟ ସହର, ଲଗ୍ନ, ଶବବାହକମାନେ, ଏଠି ସେଠି ସବୁଠି, ଅମର କବି, ସାଗର ତୀରେ, ଚନ୍ଦ୍ରଚୋରୀ, ପାହାଚ, ତଟନିରଞ୍ଜନା, ଅନ୍ଧକାରର ସ୍ୱର, ଜଣେ ରାଜାଥିଲେ, ନିଷିଦ୍ଧ ସ୍ୱପ୍ନ, ଫେରିବାର ସମୟ, ଅନ୍ୟ ଅରଣ୍ୟ, ଇତିହାସର ଯନ୍ତ୍ରଣା, ସାକ୍ଷୀ ଇତିହାସ, ଭୋକ, ବାଦ୍‌ଶାହା, ଯାଦୁକର, ଧର୍ମାବତାର, ଯନ୍ତା, ଦୁଇଟି ସୂର୍ଯ୍ୟ ଦଗ୍‌ଧ ଫୁଲକୁ ନେଇ, କଥାଟିଏ କହୁଁ ।

# ଦୀପକ ମିଶ୍ର



ଉତ୍ତରଷାଠିଏ ପ୍ରୟୋଗବାଦୀ କବି ଭାବରେ ଦୀପକ ମିଶ୍ର ଜଣେ ସଫଳସ୍ରଷ୍ଟା । ଯନ୍ତ୍ରଣା ଦଗ୍ଧ ଆବେଗକୁ ମାଧୁର୍ଯ୍ୟ ପୂର୍ଣ୍ଣ ରସିକତା ମଧ୍ୟରେ ପ୍ରକାଶ କରିବା ଓ ମିଥ୍ ଓ ରୂପକଳ୍ପର ସାର୍ଥକ ପ୍ରୟୋଗ ହିଁ କବିଙ୍କର କଳା କୁଶଳତାର ପରିଚୟ ଦିଏ । ୧୯୭୭-୭୮ ମସିହାରେ ସେ 'ବୃତ୍ତ' କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୨୦୦୧ ମସିହାରେ ବିଷୁବ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ଅସମାପିକା, ଦୀପକ ମିଶ୍ରଙ୍କ କେତୋଟି କବିତା, ଅନୁଷ୍ଟୁପ୍, ନିଷିଦ୍ଧ ହ୍ରଦ, ନିର୍ଜନ ନକ୍ଷତ୍ର, ସପ୍ତମ ପୃଥିବୀ, ଅରଣା ମଇଁଷୀ, ଶୂନ୍ୟତାର ଶୋଷ, ବୃତ୍ତ, କେମିତି ହୁଅନ୍ତା, ମଧ୍ୟାହ୍ନର ଛାଇ, କପଟ ସୂର୍ଯ୍ୟାସ୍ତ, ଋକ୍, ନିଦାଘ ଯାତ୍ରା, ଧୂଳିର ସିଂହାସନ, ନିରବଧିନାଭିଶ୍ୱାସ, ଅନଘା ।

# ପ୍ରଫୁଲ୍ଲ କୁମାର ତ୍ରିପାଠୀ

**୧୯୪୫**

ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟରେ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଜଣେ ସ୍ମରଣୀୟ ପ୍ରତିଭା । କାହାଣୀ ଅପେକ୍ଷା ଶୈଳୀ ଉପରେ ଅଧିକ ଗୁରୁତ୍ୱ ଦିଆଯାଇଥିବା ଲକ୍ଷ୍ୟ କରାଯାଏ । ଅନେକ ଗଳ୍ପ ପ୍ରେମମୂଳକ ଅଟେ । ସମ୍ବଲପୁରୀ ଭାଷାରେ ମଧ୍ୟ ସେ ଗଳ୍ପ ଲେଖନ୍ତି । ସେ ୧୯୭୯ ମସିହାରେ 'ନିଜ ସିଂହାସନ' ଗଳ୍ପ ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଛନ୍ତି । ତାଙ୍କର 'ମନ୍ତ୍ରମହୋତ୍ସ' ଗଳ୍ପସଂକଳନ ପାଇଁ ସେ ବିଜ୍ଞାନ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଆଧୁନିକ କାବ୍ୟ ଚେତନାର ସେ ଜଣେ ସଫଳ ରୂପକାର ।

**ଗଳ୍ପ ସଂକଳନ** - ନିଜ ସିଂହାସନ, ସପ୍ତାହ ଓ ଅନ୍ୟସାତ, ଜଗତ ସତ୍ୟ, ମନ୍ତ୍ର ମହୋତ୍ସବ

**କବିତା ସଂକଳନ** - ପୂର୍ବଦିଗ, ବୁଝାମଣା, ହେ ଈଶ୍ୱର ଉଠ, ନିଦ୍ରିତ ସନ୍ୟାସ, ପର୍ବ

# ଅସିତ କବି

**୧୯୩୫ -୯୯**

ଓଡ଼ିଆ ସମାଲୋଚନା ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭା । ସେ 'ଫକୀର ମୋହନ ସାହିତ୍ୟର ସମକାଳୀନ ସମାଜ ଚିତ୍ର' ଶୀର୍ଷକ ସନ୍ଦର୍ଭରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଡିଗ୍ରୀ ଲାଭ କରଥିଲେ । 'ଓଡ଼ିଆ ପ୍ରବନ୍ଧ ସାହିତ୍ୟର ଇତିହାସ' ଗ୍ରନ୍ଥ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୭୯ ମସିହା) ରେ ସମ୍ମାନିତ ହୋଇଥିଲେ ।

**ସମାଲୋଚନା ପୁସ୍ତକ** - ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସ, ତପସ୍ୱିନୀ ଓ ଗଂଗାଧର, ପ୍ରଣୟ ବଲ୍ଲରୀ ଓ କବି ଗଂଗାଧର, ମେହେର ଜୀବନୀ,

**ସଂପାଦନା** - 'ପତ୍ର ଭାରତୀ'



# କୃଷ୍ଣଚନ୍ଦ୍ର ପାଣିଗ୍ରାହୀ

## (୧୯୦୯ - ୧୯୮୭)

ଜଣେ ଐତିହାସିକ, ଗବେଷକ ତଥା ସମାଲୋଚକ ଭାବରେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ବେଶ୍ ଆଦୃତ ଲାଭ କରିଥିଲେ । ଓଡ଼ିଶାର ଇତିହାସ, କିମ୍ବଦନ୍ତୀ, ପ୍ରତ୍ନତତ୍ତ୍ୱକୁ ଆଧାର କରିସେ ବହୁ ପ୍ରବନ୍ଧ ରଚନା କରିଛନ୍ତି । ତାଙ୍କ ପ୍ରବନ୍ଧଗୁଡ଼ିକ ଅଧିକ ତଥ୍ୟ ଭିତ୍ତିକ । ସେ ୧୯୭୧ ମସିହାରେ 'ଝଙ୍କାର' ପୁରସ୍କାର ୧୯୭୬ ମସିହାରେ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଶ୍ରୀ' ଉପାଧିରେ ଭୂଷିତ ହୋଇଥିଲେ । ୧୯୭୯ ମସିହାରେ 'ମୋ ସମୟର ଓଡ଼ିଶା' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ ।

ପ୍ରବନ୍ଧ ସଂକଳନ - 'ପ୍ରବନ୍ଧ ମାନସ' (୧୯୭୨)

ସମାଲୋଚନା - ଇତିହାସ ଓ କିମ୍ବଦନ୍ତୀ, ସାରଳା ସାହିତ୍ୟର ଐତିହାସିକ ଚିତ୍ର, ଓଡ଼ିଶାର ସାଂସ୍କୃତିକ ଇତିହାସରେ ଯାଜପୁର' ପ୍ରତ୍ନତତ୍ତ୍ୱ ।

**ଇଂରାଜୀ ପୁସ୍ତକ** - Archaeological Remains - at Bhubaneswar, Chronology of the Bhaumakars and Somavamsis of Orissa, History of Orissa.



# କମଳା କାନ୍ତ ଲେଙ୍କା

## (୧୯୩୫ -୧୯୯୯)

କଳା ଓ ଜୀବନର ଐକ୍ୟବୋଧକୁ କାବ୍ୟରୂପେ ଦେବାରେ କବି କମଳାକାନ୍ତ ଲେଙ୍କା ଜଣେ ଅନନ୍ୟ ପ୍ରତିଭା । ତାଙ୍କ କବିତା ରୋମାଣ୍ଟିକ କଳ୍ପନା ପ୍ରବଣତା ଓ ଆବେଗମୟ ଭାବ ପ୍ରବଣତାରେ ଯେପରି ପରିପୂର୍ଣ୍ଣ, ବହୁ ପ୍ରତୀକ ଓ ଚିତ୍ରକଳ୍ପ ପ୍ରୟୋଗରେ ମଧ୍ୟ ସେହିପରି ମନୋରମ । ସେ ୧୯୭୯ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୦ ମସିହାରେ 'ସ୍ରୋତର ନାମ ଋତୁ' କବିତା ସଂକଳନ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ -**

ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରତୀତି (୧୯୬୩), ଉତ୍ତରଣ (୧୯୬୬), ସ୍ମରଣବିସ୍ମରଣ (୧୯୭୩), କବିତାର ମୁହଁ (୧୯୭୪), ଅନ୍ତତଃନିକ୍ଷେପ୍(୧୯୭୫), ନିଜସହଗୋଟେ ସାକ୍ଷାତକାର (୧୯୭୮), ସ୍ରୋତରନାମ ଋତୁ (୧୯୭୮), ନିତ୍ୟନିୟମିତ (୧୯୭୮), ଗୀତ ଗା ନାରେ ପକ୍ଷୀ (୧୯୮୨), ଖସିବାରବେଳ (୧୯୮୦), ଦୁଃଖସହ କଥାବାର୍ତ୍ତା (୧୯୮୭), ଚିନ୍ତାଅଙ୍କା କାନ୍ଥର ଛବି ~~(୧୯୮୬)~~ ( ଡାଏରୀ କବିତା (୨୦୦୦) [illegible] ପରିଧିବାହାରେ ଅପେକ୍ଷାରତ ପୃଥିବୀ (୨୦୦୧)

# ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା

## ୧୯୨୦ - ୯୯

ଜଣେ ସଫଳ ସମାଲୋଚକ ଭାବରେ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ଅଟନ୍ତି । ତାଙ୍କ ଆଲୋଚନାରେ ଭାଷାର ସାବଲୀଳତା ଓ ପରିବେଷଣ ଶୈଳୀର ଅନନ୍ୟତା ପରିଦୃଷ୍ଟ ହୁଏ । ଅଳଂକାର ତତ୍ତ୍ୱ ଉପରେ ଅଳଂକାର ସମ୍ପର୍କରେ ପ୍ରଥମ ଓ ଦ୍ୱିତୀୟ ଖଣ୍ଡରେ ବିଚାରଧାରା ସନ୍ନିବିଷ୍ଟ । ସେ ୧୯୮୦ ମସିହାରେ 'ଅଳଙ୍କାର ପ୍ରସଙ୍ଗ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୫ ମସିହାରେ 'କାବ୍ୟଶିଳ୍ପୀ ଗଂଗାଧର' ସମାଲୋଚନା ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ସମାଲୋଚନା** - ଅଳଂକାର ପ୍ରସଙ୍ଗ, ସାହିତ୍ୟର ସମୀକ୍ଷଣ, କାବ୍ୟଶିଳ୍ପୀ ଗଂଗାଧର, ତପସ୍ୱିନୀରେ ସୀତା,

# ପ୍ରାଣବନ୍ଧୁ କର

## ୧୯୧୪ -୧୯୯୮

ଓଡ଼ିଆ ନାଟ୍ୟସାହିତ୍ୟରେ ନାଟ୍ୟକାର ପ୍ରାଣବନ୍ଧୁ କର ଜଣେ ସୁନାମ ଅର୍ଜିତ ସ୍ରଷ୍ଟା । ସଫଳ ଏକାଙ୍କିକା ରଚୟିତା ହିସାବରେ ତାଙ୍କ ପ୍ରତିଭାର ପଟାନ୍ତର ନାହିଁ । ୧୯୮୦ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ନାଟକ 'ସ୍ନାୟୁ ସଂହାର' ପାଇଁ ସମ୍ମାନିତ ହୋଇଛନ୍ତି । ସେ ମାମୁ, ଛ'ମାଣ ଆଠଗୁଣ୍ଠ, ଲଛମା, ମାଟିର ମଣିଷ ଆଦି ଉପନ୍ୟାସକୁ ନାଟ୍ୟରୂପ ଦେଇ ସଫଳ ହୋଇଛନ୍ତି । ୧୯୭୭-୭୮ ମସିହାରେ ସେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ନାଟକ** - ଶ୍ୱେତପଦ୍ମା, - ୧୯୫୮, ଅଶାନ୍ତ, ସ୍ନାୟୁସଂହାର - ୧୯୭୨, ଦୁଃଖାବତରଣ -

**ଏକାଙ୍କିକା** - ବହୁତ ଏକାଙ୍କିକା ଗୁଡ଼ିକ 'ଏକାଙ୍କିକା ଏକ', 'ଏକାଙ୍କିକା ଦୁଇ'ରେ ସଂକଳିତ ।

**ଗଳ୍ପ** - 'ପ୍ରାଣବନ୍ଧୁଙ୍କ କ୍ଷୁଦ୍ରଗଳ୍ପ' ବେତାର ନାଟକ - ନକହିଲେ ଭଲ, ବଜ୍ରକବାଟ, ବେଗମ କୋଠା, ଅନୁପ୍ରାସ,

# ଅଚ୍ୟୁତାନନ୍ଦ ପତି

## (୧୯୨୭)

ବିଶିଷ୍ଟ ଗାଳ୍ପିକ ଭାବରେ ଅଚ୍ୟୁତାନନ୍ଦ ପତି ଜଣେ ସାର୍ଥକ ସ୍ମରଣୀୟ ପ୍ରତିଭା । ନିଜସ୍ୱ ଶୈଳୀରେ ସ୍ୱତନ୍ତତା ହିଁ ତାଙ୍କ ରଚନାର ବୈଶିଷ୍ଟ୍ୟ ଅଟେ । ୧୯୮୩ ମସିହାରେ 'ସ୍ନାୟୁ ଓ ସନ୍ୟାସୀ' ଗଳ୍ପପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୪ ମସିହାରେ ସେ ଝଙ୍କାର ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଗଳ୍ପସଂକଳନ** - ଅଶୁଭ ପୁତ୍ରର କାହାଣୀ - ୧୯୭୩, ଉଗ୍ରସେନ ଉବାଚ - ୧୯୭୬, ନିଆଁ ଜଳୁଛି - ସ୍ନାୟୁ ଓ ସନ୍ୟାସୀ - ୧୯୮୧, ତ୍ରିଶଙ୍କୁ, ଚାରି ସଙ୍ଗାତ କଥା - ୧୯୮୩, ଅବାଧ ପ୍ରଜାପତି ।

## ବିଭୂତି ଭୂଷଣ ତ୍ରିପାଠୀ

### (୧୯୧୯ - ୯୭)

ସ୍ୱାଧୀନତା ପରବର୍ତ୍ତୀ ଗାଳ୍ପିକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ମନସ୍ତାତ୍ତ୍ୱିକ ତଥା ମାନବବାଦୀ ଗଳ୍ପର ରଚନାରେ ତାଙ୍କର ଲେଖନୀ ସାର୍ଥକ ଲିଭିଛି । ସେ ୧୯୭୬ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୧ ମସିହାରେ 'ନିଶାନ୍ତ' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ଗଳ୍ପ ସଂକଳନ** - ସେତୁ, ନିଶାନ୍ତ, ଚନ୍ଦନା, ବିଶଲ୍ୟ କରଣୀ, ଅହଲ୍ୟା, କେତୋଟି ନିର୍ବାଚିତ ଗଳ୍ପ,

## ଆନନ୍ଦଶଙ୍କର ଦାସ

### (୧୯୨୯)

ଓଡ଼ିଆ ନାଟ୍ୟ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭା । ତାଙ୍କ ନାଟ୍ୟକୃତିର ବିଷୟବସ୍ତୁର ବିନ୍ୟାସ, ଚରିତ୍ର ଚିତ୍ରଣ ଓ ସଂଳାପ ବେଶ୍ ମାର୍ମିକ । ସେ ୧୯୮୧-୮୨ ମସିହାରେ ନାଟ୍ୟରଚନା ପାଇଁ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୮୧ ମସିହାରେ 'ଧର୍ମାର ଅଭିଶାପ' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ନାଟକ** - ସମାଧି (୧୯୫୦) ଯୌତୁକ, ଚନ୍ଦ୍ରଭାନୁ, ଲୁହାଶିକୁଳି, ଭାନୁମତୀର ଖେଳ, ଦୁଇଟି ଆଖି, କପଟ ପାଶା, ଚିଡ଼ିଆଖାନା, ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ, ଡାକ୍ତରଖାନା, ଧର୍ମାର ଅଭିଶାପ, ଚକା ଭଉଁରୀ, ମଣି କାଞ୍ଚନ, ବୁଲୁ ଓସ୍ତାଦ୍, ଫୁଲଶଯ୍ୟା, କିଏ କ'ଣ କାହିଁକି, କଉଡ଼ି ଖେଳ, ଅଭିମାନ, ଫୁଲଚନ୍ଦନ, ପରଦେଶୀ ଚଢ଼େଇ ।

## ଦୁର୍ଗାମାଧବ ମିଶ୍ର

### ୧୯୨୯ - ୯୭

ଗାଳ୍ପିକ ଭାବରେ ଦୁର୍ଗାମାଧବ ମିଶ୍ର ଯେତିକି ଆଦୃତ, ଜଣେ କବି ଭାବରେ ମଧ୍ୟ ସେ ସେତିକି ଖ୍ୟାତ । ସେ ୧୯୭୫ ମସିହାରେ 'ଝଙ୍କାର ପୁରସ୍କାର', ୧୯୮୨ ମସିହାରେ ସେ ଗଳ୍ପ ପୁସ୍ତକ 'ନିଷାଦର ନିଃଶବ୍ଦ ବାରଣ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ମୁଠାଏ ମାଟି ଚିନାଏ ଆକାଶ, ବୃତ୍ତ ଓ ଆବର୍ତ୍ତ, ଉଗ୍ରସେନ ଉବାଚ, ମୌନ ମୁଖର, ଅସମାପିକା ।

**ଗଳ୍ପ ସଂକଳନ** - ଜଉତିଷେ କହିଛନ୍ତି, ମନ୍ଦାକ୍ରାନ୍ତା, ତାରା ଓ ତିମିର, ଫଲ୍‌ଗୁରେ ବନ୍ୟା, ନିଷାଦର ନିଃଶବ୍ଦ ବାରଣ, ଦୂରକୁ ଦୂରକୁ, ଅପରାହ୍ଣର ଗଳ୍ପ ।



## ଉଦୟନାଥ ଷଡ଼ଙ୍ଗୀ

### (୧୯୦୫ - ୧୯୯୯)

ଶିଶୁ ସାହିତ୍ୟିକ ଭାବରେ ଉଦୟନାଥ ଷଡ଼ଙ୍ଗୀ ଜଣେ ପ୍ରଖ୍ୟାତ ସ୍ରଷ୍ଟା । ଶିଶୁମାନଙ୍କ ପାଇଁ ବହୁ ପୁସ୍ତକ ରଚନା କରି ଓଡ଼ିଆ ଶିଶୁ ସାହତ୍ୟକୁ ସେ ସମୃଦ୍ଧ କରିଛନ୍ତି । ୧୯୮୨ ମସିହାରେ 'ଗାନ୍ଧୀ ମହାରାଜଙ୍କ ଶିଷ୍ୟ' ଜୀବନୀ ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଥିଲେ ।

**ଶିଶୁ ସାହିତ୍ୟ** - ଓଡ଼ିଶାର ଇତିକଥା, ଭାରତର ଇତିହାସ କଥା, ସିନ୍ଦବାଦ୍ ଓ ଆଲ୍ଲିବାବା, ସର୍ପ ରାଇଜ (୬ଖଣ୍ଡ), ପରୀ ରାଇଜ - (୬ଖଣ୍ଡ), ଚୁଉକୁ ମୂଷି (କବିତା ସଂକଳନ) କୁଲୁର ମୂଳକ ବୁଲା, କୁତୁ କୁତୁ, ବାଦୁଡ଼ି ମହାସଭା, ଗ୍ରହ ଜଗତ, ଜହ୍ନ ମାମୁଁ, ଚକା ଚକା ଭଉଁରୀ, ବିଲୁଆ ନନାର ବାହାଘର, ପିଲାଙ୍କ ଜୀବନୀ, ହରି ଭାଇଙ୍କ ଘର ବାହୁଡା,

**ଅନୁବାଦ** - ଟମକକାଙ୍କ କୁଟୀର (ଉପନ୍ୟାସ), **ଜୀବନୀ** - ସତ୍ୟବାଦୀ ବିହାରର ସ୍ମୃତି, **ଆତ୍ମଜୀବନୀ** - ଗାନ୍ଧୀ ମହାରାଜାଙ୍କ ଶିଷ୍ୟ,

## ଉମାଶଙ୍କର ପଣ୍ଡା

### (୧୯୩୧)

ରୋମାଣ୍ଟିକ ଗୀତିକବି ଭାବରେ କବି ଉମାଶଙ୍କର ପଣ୍ଡା ଜଣେ ସାର୍ଥକ ପ୍ରତିଭା । ଗଳ୍ପ, ଉପନ୍ୟାସ ରଚନାରେ ମଧ୍ୟ ତାଙ୍କର ସିଦ୍ଧି ଦେଖିବାକୁ ମିଳେ । ୧୯୮୨ ମସିହାରେ ସେ 'ନିଃଶବ୍ଦ ନୂପୁର' କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୯୨ ମସିହାରେ ସେ 'ଝଙ୍କାର' ପୁରସ୍କାର ସମ୍ବର୍ଦ୍ଧନାରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ରୋମାଣ୍ଟିକ କବିତା, ଇମାନ୍ କଲ୍ୟାଣ, କେକାକୁହୁକାକଳି, ଋତୁ ଓ ତାର ପ୍ରେମିକା ମାନେ, ନିଃଶବ୍ଦ ନୂପୁର ।

**ଗଳ୍ପ ସଂକଳନ** - ନୋବେଲ ଲଟିଏଟ୍, ଋଷ ଓ ଚୀନ୍‌ର ଶ୍ରେଷ୍ଠଗଳ୍ପ, ଫାଶୀର ଆଗଦିନ (ଅନୁବାଦ) କେତେଚିତ୍ରଙ୍ଗଦା, ଅନ୍ଧକାରର ପ୍ରତିମା, ଅହଂକାର, **ଉପନ୍ୟାସ** - ନଦୀ ଉପନଦୀ



## ବ୍ରହ୍ମୋତ୍ରୀ ମହାନ୍ତି

### ୧୯୩୪

ଆଧୁନିକ ଓଡ଼ିଆ କବିତାରେ ନାରୀକବି ବ୍ରହ୍ମୋତ୍ରୀ ମହାନ୍ତି ଜଣେ ସ୍ମରଣୀୟ ପ୍ରତିଭା । ସାମାଜିକ ଜୀବନର ସଂକଟମୟ ସ୍ଥିତି ତଥା ବହୁ ଆବେଗ ଅନୁଭୂତି ମୂଳକ କବିତା ରଚନାରେ ତାଙ୍କର ଲେଖନୀ ସାର୍ଥକ ଲଭିଛି । ସେ ୧୯୮୫ ମସିହାରେ 'ଝଙ୍କାର' ପୁରସ୍କାର, ୧୯୮୩ ମସିହାରେ 'ଦୃଷ୍ଟିର ଦ୍ୟୁତି' କବତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ଅବତରଣ, ଦୃଷ୍ଟିର ଦ୍ୟୁତି, ସ୍ତବକ,

## କମଳଲୋଚନ ମହାନ୍ତି

### ୧୯୨୧ - ୧୯୯୧

ଓଡ଼ିଆ ନାଟ୍ୟ ସାହିତ୍ୟରେ ଜଣେ ବିଶିଷ୍ଟ ପ୍ରତିଭା । ବହୁ ନାଟକ ରଚନା କରି ଓଡ଼ିଆ ନାଟ୍ୟ ସାହିତ୍ୟକୁ ସେ ସମୃଦ୍ଧ କରିଛନ୍ତି । ୧୯୮୩ ମସିହାରେ 'ଏକାଙ୍କିକା ତରଂଗ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର, ୧୯୮୦ ମସିହାରେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାରରେ ସମ୍ବର୍ଦ୍ଧିତ ହୋଇଛନ୍ତି ।

ନାଟକ - ସମାଧାନ, ଅଭ୍ୟୁଦୟ, ଗାଁମାଟି, କିରାଣୀ, ସ୍ୱାମୀ-ସ୍ତ୍ରୀ, ଡାକ ବଙ୍ଗଳା, ମାତୃ ମଙ୍ଗଳ କେନ୍ଦ୍ର, ଆଜାଦୀ, ପିପାସା, ସଂଗ୍ରାମ, କଳାକାର, ସାବତ ମା', ପାପପୁଣ୍ୟ, ଅମାବସ୍ୟାର ଇନ୍ଦୁ, ରାମ୍‌ରହିମ୍, ଆମଗାଁ, ଘର ବାହୁଡା, ଗାଁ ମାଟି, ଭାଇଭଉଣୀ, ମଣିଷ ସନ୍ତାନ, ମଣିକାଞ୍ଚନ, ମିସ୍‌ମଲ୍ଲିକ, ସୁମିତ୍ରାର ସନ୍ତାନ,

ଏକାଙ୍କିକା - ଏକାଙ୍କିକା ତରଙ୍ଗ,



# ବ୍ରଜନାଥ ରଥ

## (୧୯୩୬)

ଓଡ଼ିଆ ସାହିତ୍ୟରେ ଜଣେ ଅନ୍ୟତମ ସ୍ମରଣୀୟ ପ୍ରତିଭା । ବୈପ୍ଳବିକ ଆଭିମୁଖ୍ୟନେଇ ଏକ ଶୋଷଣମୁକ୍ତ ଶାନ୍ତସମାହିତ ସମାଜ ବ୍ୟବସ୍ଥାପାଇଁ କବିମାନସ ଆଶାୟୀ, ତେଣୁ ମାନବିକ ଭାବସମ୍ବେଦନାରେ କବିତା ଗୁଡ଼ିକ ବେଶ୍ ମାର୍ମିକ, ସେ ୧୯୭୪ ମସିହାରେ 'ଝଙ୍କାର' ପୁରସ୍କାର, ୧୯୯୪ ମସିହାରେ ବିଷୁବ ପୁରସ୍କାର, ୧୯୮୪ ମସିହାରେ 'ମନର ମାନଚିତ୍ର' କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ସେ ୨୦୦୩ ମସିହାରେ ସାହିତ୍ୟ ଭାରତୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ମରୁ ଗୋଲାପ, ନିଜସ୍ୱ ସଂଳାପ, ସଭ୍ୟତାର ମୁହଁ, ନିଃଶବ୍ଦ ପ୍ରତିବାଦ, ମନର ମାନଚିତ୍ର, ହେ ମହା ଜୀବନ, ଲଘୁ ଶତକ, ଏକଏକ ଏକପଦୀ, ହେ ମୋର ସ୍ୱଦେଶ,

ଅନୁବାଦ - ତସ୍‌ଲିମାଙ୍କ ଶ୍ରେଷ୍ଠକବିତା, ଦୁଃଖିନୀ ଝିଅର ଗୀତ, ନିର୍ବାଚିତ କଲାମ୍ ।



# ରମେଶ ପ୍ରସାଦ ପାଣିଗ୍ରାହୀ
## (୧୯୪୪)

ନବନାଟ୍ୟ ଆନ୍ଦୋଳନର ଏକ ନୂତନ ଧାରାର ପ୍ରବର୍ତ୍ତକ ଭାବରେ ରମେଶ ପ୍ରସାଦ ପାଣିଗ୍ରାହୀ ଜଣେ ସାର୍ଥକ ଶିଳ୍ପୀ । ନାଟକରେ ଆଙ୍ଗିକ ଓ ଆତ୍ମିକରେ ପରିବର୍ତ୍ତନ ତଥା ନୂତନ ପରୀକ୍ଷା ନିରୀକ୍ଷାରେ ସଫଳତା ଅର୍ଜନ କରିଛନ୍ତି । ସେ ୧୯୮୪ ମସିହାରେ 'ମହାନାଟକ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**ନାଟକ** - ମୁକ୍ତିମଣ୍ଡପ, ମୁଁ ଆମ୍ଭେ ଓ ଆମ୍ଭେମାନେ, ଜଣେ ମହାପୁରୁଷଙ୍କ ଜନ୍ମ ମୃତ୍ୟୁ ସମ୍ପର୍କରେ, ଧୃତ ରାଷ୍ଟ୍ରର ଆଖି, ଆତ୍ମଲିପି, ଗୁଣ୍ଡା, ତିମିରତୃଷ୍ଣା, ମନ ବୁଝେନା, ଶିକାର ସ୍ୱପ୍ନ, ହେ ପୃଥିବୀ ବିଦାୟ, ଶ୍ରୀକୃଷ୍ଣ ଆସୁଛି, ମହାନାଟକ, ଦୁର୍ଘଟଣାବଶତଃ, ଶେଷ ପାହାଚ, ମଣ୍ଡୁକ ଉପାଖ୍ୟାନମ୍, କମଳପୁର ଡାକଘର, ନଷ୍ଟଚନ୍ଦ୍ରର ଉପତ୍ୟକା, ଗୋଧୂଳିର ରଙ୍ଗ, ପକା କମ୍ବଳ ପୋତ ଛତା, ଉଡ଼ନ୍ତା ପାହାଡର ଚର୍ଚ୍ଚା (ଏକାଙ୍କିକା) ଅପ୍ରୀତିକର ନାଟକ (ଏକାଙ୍କିକା)



# କାର୍ତ୍ତିକ ଚନ୍ଦ୍ର ରଥ

## (୧୯୪୯)

ଓଡ଼ିଆ ନାଟ୍ୟ-ସାହିତ୍ୟରେ ଜଣେ ସଫଳ ନାଟ୍ୟକାର ଭାବରେ ଆଦୃତ ଓ ଖ୍ୟାତ । ବହୁ ନାଟକ ରଚନା କରି ସେ ଓଡ଼ିଆ ନାଟ୍ୟ-ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତାଙ୍କର ନାଟ୍ୟ-ପ୍ରତିଭା ପାଇଁ ସେ ୧୯୭୫ ମସିହାରେ 'ଜୀବନରଂଗ ପୁରସ୍କାର', ୧୯୯୦ ମସିହାରେ 'ଝଙ୍କାର' ପୁରସ୍କାର, ୧୯୯୪-୯୫ ମସିହାରେ ଓଡ଼ିଶା ସଂଗୀତ ନାଟକ ଏକାଡ଼େମୀ ପୁରସ୍କାର, ୧୯୯୪ ମସିହାରେ ନାଟକ 'ନିଃସଂଗ ବିସର୍ଗ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ରାଜ୍ୟସ୍ତରୀୟ ତଥା ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ଶ୍ରେଷ୍ଠ ନାଟ୍ୟକାର ଓ ନିର୍ଦ୍ଦେଶକ ରୂପେ ସେ ବହୁବାର ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

**ନାଟକ** - ଏଇ ଦେଶ ଏଇମାଟି, ଦୁଇ ଟୋପା ଲୁହ, ଦୀପ ଲିଭି ଲିଭି ଯାଏ, ଗୋଟିଏ ସାଗର କୋଟିଏ ଢେଉ, ସବୁଜ ସୂର୍ଯ୍ୟ, ଏ ସୃଷ୍ଟି ଅମୃତମୟ, ଜୀବନ-ଯଜ୍ଞ, କଳା ଓ କଳଙ୍କ, କ୍ରୀତଦାସ, ଆଜିର ରାଜା, ସ୍ୱୟମ୍ବର, ଅନ୍ଧାରର ଆଇନା, ସ୍ୱର୍ଗଦ୍ୱାର, ସମୁଦ୍ରର ରଙ୍ଗ ଯନ୍ତ୍ରଣା, ଅବଶିଷ୍ଟ ପୃଥିବୀ, ସ୍ମୃତି, ସାନ୍ତ୍ୱନା ଓ ଶୂନ୍ୟତା, ଦର୍ପଣ, ତୃତୀୟ ପୃଥିବୀ; ଆଗାମୀ ଅତୀତ, ଚିରନ୍ତନ ବର୍ତ୍ତମାନ, ଅନ୍ୟ ଆକାଶ, ଚନ୍ଦ୍ରବିନ୍ଦୁ, ଚାରି କାନ୍ଥର କାହାଣୀ, ଅସ୍ତ ସୂର୍ଯ୍ୟର ଶ୍ମଶାନ, ବହ୍ନିମାନ, ମାଂସର ପୁଲ, ମହାଭାରତ ଅନ୍ତିମପର୍ବ, ମୁଁ ତୁହେଁ, ଈଶ୍ୱର ଜଣେ ଯୁବକ, ଶହୀଦ୍ ଭଗତ୍ ସିଂହ, ଅଥଚ ରାମାୟଣ, ଚଇତି ଘୋଡ଼ା, ଯେହେତୁ ସ୍କାଇଲାବ୍, ଜଉଘର, ଶୁକ ଶାରୀ କଥା, ଦ୍ୱିତୀୟ ଦ୍ରୌପଦୀ, ବନାମ ଅଭିନେତା, ଅକ୍ଳାନ୍ତ ଅଭିମନ୍ୟୁ, ଶୃଙ୍ଖଳା ମାଟିର ଲୁହ, ରକ୍ତର ପାହାଡ, କଟକ ନଗର ବରଷ ହଜାର, ରକ୍ତର ପାହାଡ଼, ପାଦ ତଳର ଆକାଶ, ପ୍ରେମ ଋତୁ, ମା', ମାଟି ଓ ମଣିଷ, ରକ୍ତର ଫୁଲ ଇତ୍ୟାଦି ।



## ହରପ୍ରସାଦ ଦାସ

### (୧୯୪୫)

ସାମ୍ପ୍ରତିକ ଆଧୁନିକ ଓଡ଼ିଆ କବିତାର ଜଣେ ସଫଳ ସ୍ରଷ୍ଟା ରୂପ ସୌନ୍ଦର୍ଯ୍ୟ ଓ ଭାବଗାମ୍ଭୀର୍ଯ୍ୟ ହିଁ ତାଙ୍କ କବିତାର ବୈଶିଷ୍ଟ୍ୟ ଅଟେ । ସେ ୧୯୯୨ ମସିହାରେ 'ମନ୍ତ୍ରପାଠ' କବିତା ସଂକଳନ ପାଇଁ ଉତ୍କଳ ସମ୍ମାନ ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୯୩) ମସିହାରେ 'ଝଙ୍କାର' ପୁରସ୍କାର, ୧୯୯୯ ମସିହାରେ 'ଗର୍ଭଗୃହ' କବିତା ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ଆଲୋକିତ ବନାବାସ - ୧୯୮୦, ମନ୍ତ୍ରପାଠ ୧୯୯୧, ଗର୍ଭଗୃହ - ୧୯୯୩, ଦୂରତ୍ୱର ଭ୍ରମ - ୧୯୯୪, ଅର୍ଥ ସହିତ ଶତ୍ରୁତା - ୧୯୯୫,

ଉପନ୍ୟାସ - ଲବ୍‌ଧକର ତିନିପ୍ରହର (୧୯୭୯)

ସମାଲୋଚନା - ଆଧୁନିକତାର ପରମ୍ପରା - (୧୧୯୫)

## ଜିତେନ୍ଦ୍ର ନାରାୟଣ ଦାଶ୍ (ଦାଶବେନହୁର)

### (୧୯୫୩)

ଜଣେ ଗାଳ୍ପିକ ଓ ଲଳିତ ନିବନ୍ଧକାର କେବଳ ନୁହଁନ୍ତି, ସେ ବିଦଗ୍ଧ କବି ଭାବରେ ଆଦୃତ । ସେ ୧୯୮୭ ମସିହାରେ 'କୁନା ପାଇଁ ଆନବନା ଗୀତ' ଶିଶୁ ସାହିତ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପରୁସ୍କାର ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ଅସରନ୍ତି ମେଘ,

**ଗଳ୍ପ ସଂକଳନ** - ନାଭିସମୁଦ୍ର, ସମୟ ସମ୍ପର୍କ, ଛାଇନିଦ, କୁହୁଡିର ଘର, ଅକ୍ଷର ଅରଣ୍ୟ, ଏମନ୍ତ ଧରା, ଡ଼େଣା, ଅଙ୍କାବଙ୍କାନଈ,

ଶିଶୁସାହିତ୍ୟ - କୁନାପାଇଁ ଅନାବନା ଗୀତ, ଶିଶୁଗୀତ, ଫରୁଆ ଭିତରେ ଫରୁଆ, ତାକ ତାକ ତାକ, ପିଲାଙ୍କ ପାଇଁ ପହଳି, କହିଲ ଦେଖି ।



# ପ୍ରସନ୍ନ କୁମାର ମିଶ୍ର

## (୧୯୪୧)

ଡଃ ମିଶ୍ର ଏକାଧାରରେ କବି, କଥାକାର ଓ ନାଟ୍ୟକାର ଭାବରେ ଜଣେ ସଫଳ ସ୍ରଷ୍ଟା । ଅଧ୍ୟାପନା ସହ ସାହିତ୍ୟ ସାଧନା କ୍ଷେତ୍ରରେ ସେ ସ୍ମରଣୀୟ ପ୍ରତିଭା । ୧୯୮୦ ମସିହାରେ ସେ ଝଙ୍କାର ପୁରସ୍କାର ଲାଭ କରିବା ସଂଗେ ସଂଗେ ୧୯୯୦ ମସିହାରେ ଦିଲ୍ଲୀର ବାଳ ଶିକ୍ଷା ପରିଷଦ ପକ୍ଷରୁ ଶିଶୁ ସାହତ୍ୟ ରଚନା ପାଇଁ ସେ ସମ୍ମାନିତ ହୋଇଛନ୍ତି । ୧୯୮୮ ମସିହାରେ ସେ ନାଟକ 'ଜନ ସେବକ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି । ୧୯୯୭ ମସିହାରେ କଟକର 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

**କବିତା ସଂକଳନ** - ରତ୍ନଦ୍ୱୀପର ମାଝି, ଅଦୃଶ୍ୟ ସଂଗମ, ବସନ୍ତର ସ୍କେଚ୍, ସାରା ଆକାଶରେ ତା'ର ଡାକ, ଆ'ପକ୍ଷୀ ଫେରିଆ, ଟ୍ରକ୍ ଡାଲାରେ ସନାତନ, ଟାଲିବାର ଗୀତ,

**ଉପନ୍ୟାସ** - ଅସୁର, ବଢ଼ି ପାଣିର ଦାନ୍ତ

**ନାଟକ** - ପ୍ରେମ ଖେଳ, ଗୋଟିଏ ଘର ଛଅଟି ଝରକା, ଜୀବନ ନାମକ ଗ୍ରନ୍ଥରେ ଦୁଃଖ ନାମକ ଫୁଲ, ଛଣ ମୂର୍ତ୍ତି, ସୁବର୍ଣ୍ଣ ବସୁଧା, ତଳ ପାହାଚ, ଆଶାକାନନ, ଜନ ସେବକ,

**ସମାଲୋଚନା** - ପୂର୍ବ ଭାରତର ହିନ୍ଦୁଲୋକ ମିଥ୍, ଓଡ଼ିଶାର କିମ୍ବଦନ୍ତୀ ।



# ସଦାଶିବ ମିଶ୍ର

## (୧୯୧୧)

ଡ଼ଃ ମିଶ୍ର ଭାରତର ଜଣେ ଅର୍ଥନୀତିଜ୍ଞ, ଗବେଷକ ଭାବରେ ପରିଚିତ, ଅର୍ଥନୀତି କ୍ଷେତ୍ରରେ ଗବେଷଣା ପାଇଁ ସେ ୧୯୬୧ ମସିହାରେ ପଦ୍ମ-ଶ୍ରୀ ଉପାଧିରେ ସେ ସମ୍ମାନିତ । ଉତ୍କଳ ବିଶ୍ୱବିଦ୍ୟାଳୟରେ ସାତବର୍ଷ ଧରି କୁଳପତି ଭାବରେ ସୁନାମ ଅର୍ଜନ କରିଛନ୍ତି । ୧୯୮୮ ମସିହାରେ ସେ ପ୍ରବନ୍ଧ ''ମାତୃପୂଜା ମଣ୍ଡପ'' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନୀତ ହୋଇଛନ୍ତି ।

**ପ୍ରବନ୍ଧ ରଚନାବଳୀ** - ଖାଇବା ଆମେ କ'ଣ (୧୯୪୭) ମନ୍ଦଗ୍ରହ (୧୯୮୩) ଅର୍ଥ ଓ ଅର୍ଥାନ୍ତର (୧୯୮୫), ମାତୃ ପୂଜାମଣ୍ଡପ (୧୯୮୬), ଆଲୋକର ସନ୍ଧାନ (୧୯୮୮) ଉପନ୍ୟାସ ମାର୍କିନ ପରିକ୍ରମା (୧୯୮୯) - ଭ୍ରମଣ କାହାଣୀ, Economic survey of Orissa - (1950) (ଗବେଷଣା ସନ୍ଦର୍ଭ) ।



# ସୁଦର୍ଶନ ଆଚାର୍ଯ୍ୟ

## (୧୯୨୪)

ପଣ୍ଡିତ ସୁଦର୍ଶନ ଆଚାର୍ଯ୍ୟ ଜଣେ ସ୍ମରଣୀୟ ପ୍ରତିଭା । ଜଣେ ବାଗ୍ମୀ ଭାବରେ ଯଶ ଅର୍ଜନ କରିଛନ୍ତି । ୧୯୮୮ ମସିହାରେ ସେ 'ଜଗନ୍ନାଥ ଅଷ୍ଟୋରେ ଶତକମ୍' ସଂସ୍କୃତ ଖଣ୍ଡକାବ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଛନ୍ତି । ଓଡ଼ିଆ ସମାଲୋଚନା ସାହିତ୍ୟକୁ ତାଙ୍କର ଅବଦାନ ଯଥେଷ୍ଟ ରହିଛି ।

ସମାଲୋଚନା- ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, କାବ୍ୟ କୌଶଳ,
ସଂସ୍କୃତ ଖଣ୍ଡ କାବ୍ୟ - ଜଗନ୍ନାଥ ଅଷ୍ଟୋତ୍ତର ଶତକମ୍
ଓଡ଼ିଆ ଖଣ୍ଡକାବ୍ୟ - ଶ୍ରୀରାମ ଶତକ
ଅପ୍ରକାଶିତ ରଚନା ବଳୀ - (ସଂସ୍କୃତ)
ପିତୃସ୍ମୃତି ଶତକମ୍, ସଂସ୍କୃତ କବିତା ବଲ୍ଲରୀ
ଲଘୁ ରଚନାବଳୀ, ବିବିଧ ସମସ୍ୟା ପୂର୍ତ୍ତି
ସୀମାନ୍ତ ପ୍ରହରୀ (ନାଟକମ୍)



# ରାଜକିଶୋର ରାୟ

## (୧୯୧୪)

ଓଡ଼ିଆ ସାହିତ୍ୟରେ ଶ୍ରୀଯୁକ୍ତ ରାୟ ଜଣେ ପ୍ରତିଷ୍ଠିତ ପ୍ରତିଭା । ଗାଳ୍ପିକ ଭାବରେ ତାଙ୍କର ପ୍ରତିଭା ସ୍ୱୀକାର୍ଯ୍ୟ । ପ୍ରବନ୍ଧ, ଉପନ୍ୟାସ, କବିତା, ଶିଶୁସାହିତ୍ୟ ମଧ୍ୟ ରଚନା କରି ଯଶସ୍ୱୀ ହୋଇଛନ୍ତି । ୧୯୫୭ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ପ୍ରଥମ ସଂପାଦକ ଭାବରେ ନିଯୁକ୍ତ ହୋଇଥିଲେ ଅଧ୍ୟାପନା ସହ ସାରସ୍ୱତ ସାଧନାରେ ସେ ଲିପ୍ତରହିଛନ୍ତି । ସେ ୧୯୨୩ ମସିହାରେ 'ଝଙ୍କାର' ପୁରସ୍କାର, ୧୯୯୩ ମସିହାରେ କଟକର ସାରଳା ସଂସଦ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି । ୧୯୮୯ ମସିହାରେ 'ମନ୍ୱନ୍ତରର ମାନବ' ଗଳ୍ପ ସଂକଳନ ପାଇଁ ଓଡ଼ିଶାସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

କବିତା ସଂକଳନ - ଦୀପାଳୀ - ୧୯୩୫

ଉପନ୍ୟାସ - ଉଲଗ୍ନ ବନବାସ

ଜୀବନୀ - ବାପୁସ୍ମରଣେ

ଆତ୍ମ ଜୀବନୀ - ଆଦ୍ୟପ୍ରାଣ ଚିନ୍ମୟ

ଧର୍ମ - ଶ୍ରୀ ଅରବିନ୍ଦ ଓ ଶ୍ରୀମା ଚେତନାବଳୀ

ସମାଲୋଚନା - ସାହିତ୍ୟ ଓ ସାହିତ୍ୟତତ୍ତ୍ୱ

ଶିଶୁ ସାହିତ୍ୟ - ଅମରକଥା

**ଗଳ୍ପ ସଂକଳନ** - ନୀଳ ଲହରୀ, ବିକଚ ଶତଦଳ, ବନ ଜ୍ୟୋତ୍ସ୍ନା, ଅଶୋକ ଚକ୍ର, ଜୟଶଙ୍ଖ, ମନର ମୃଣାଳ, ଏହିକି ଦବାୟତନ, ଆଦିପୁରୁଷ, ମଧ୍ୟାହ୍ନର ମରୁ ପଥେ, ପଙ୍କ ଚନ୍ଦନ, ଜୟଶ୍ରୀ, ଅମୃତ, ଶୋଣିତ କାବ୍ୟ, ଜୀବନ ସଂଗୀତ, ଦୁର୍ବଳଦେବାଳୟ, ସୁନ୍ଦରର ଆବାହନ ମନ୍ୱନ୍ତରର ମାବେ, ଦୃଶ୍ୟ ଦୃଶ୍ୟାନ୍ତର ।



# ଶକୁନ୍ତଳା ଦେବୀ

## (୧୯୪୫)

କବି ତଥା ଗାଳ୍ପିକା ଭାବରେ ଶକୁନ୍ତଳା ଦେବୀଙ୍କ ପ୍ରତିଭା ଅନସ୍ୱୀକାର୍ଯ୍ୟ । ୧୯୮୯ ମସିହାରେ ସେ କବିତା ସଂକଳନ 'ଅନନ୍ତ ଶୟନ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତା ହୋଇଛନ୍ତି ।

**କବିତା ସଂକଳନ** - କାଚଝୁଲଣା, ଭିଜାଗୟସ, ଲୋଟଣୀ, ଅନନ୍ତ ଶୟନ, ଶତାଭିଷେକ

**ଗଳ୍ପ ସଂକଳନ** - ଚୈତ୍ରା ଅବନାଶୀ, ଫଲଗୁ

**ଉପନ୍ୟାସ** - ଆରମ୍ଭରୁ ଉପସଂହାର

# ଡଃ ବିଜୟ କୁମାର ଶତପଥୀ

## (୧୯୫୨)



ଜଣେ ନାଟ୍ୟକାରତଥା ସମାଲୋଚକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ଅଧ୍ୟାପନା ସହ ସାରସ୍ୱତ ସାଧନାରେ ସେ ବ୍ରତୀ ହୋଇ ଆସିଛନ୍ତି । ୧୯୮୯ ମସିହାରେ ସେ 'ଏଇ ଯେ ସୂର୍ଯ୍ୟଉଁଏ' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ' ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

**ନାଟକ** - ପଂସିଲର ନିଦ୍ରାଭଂଗ,ଙ୍କସରଆତ୍ମା, କ୍ଷୁଧିତ ସରୀସୃପ, ଏଇ ଯେ ସୂର୍ଯ୍ୟ ଉଁଏ, ବିଷାଦ ବୃତ୍ତର କାହାଣୀ

**ବେତାର ନାଟକ** - ଏକ ଭଗ୍ନ ସହରର ଇତିବୃତ୍ତ, କର୍ଣ୍ଣ, ମହାନଦୀର ଆତ୍ମ କଥା

**ସମାଲୋଚନା** - କଲ୍ଲୋଳ ଓ ଚିନ୍ତାମଣ- ଏକ ଦ୍ୟଷ୍ଟିପାତ, ସାରସ୍ୱତ ମୂଲ୍ୟାୟନ, ଔପନ୍ୟାସିକ ନିତ୍ୟାନନ୍ଦ, ନୂତନ ମୂଲ୍ୟବୋଧର ନାଟକ, ପ୍ରଗତି ବାଦୀ କାବ୍ୟ ଚେତନା, ସମାଲୋଚନା ଓ ପର୍ଯ୍ୟାଲୋଚନା, ଓଡ଼ିଆ ସାହିତ୍ୟରେ ପ୍ରଗତିବାଦୀ ଧାରା ।



# ଡଃ ଜଗନ୍ନାଥ ପଟ୍ଟନାୟକ

## (୧୯୩୩)

ଡଃ ପଟ୍ଟନାୟକ ଜଣେ ଐତିହାସିକ, ପ୍ରାବନ୍ଧିକ ଭାବରେ ଯଶ ଅର୍ଜନ କରିଛନ୍ତି । ସେ ଇଣ୍ଡିଆନ ଏକାଡ଼େମୀ ଅଫ୍ ସୋସିଆଲ ସାଇନସ୍‌ର ସଭ୍ୟ, ଓଡ଼ିଶା ଇତିହାସ କଂଗ୍ରେସର ସଭାପତି ଓ ସମ୍ପାଦକ, ଭାରତୀୟ ଇତିହାସ କଂଗ୍ରେସର ସଭ୍ୟ, ଓରିଶାନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଉଥ୍ ଇଷ୍ଟ ଏସିଆ ଏଣ୍ଡ ମେରିଟାଇମ୍ ଷ୍ଟଡିଜର କାର୍ଯ୍ୟକାରୀ ସଦସ୍ୟ ଭାବରେ ସଂପୃକ୍ତ ଅଛନ୍ତି । ୧୯୮୯ ମସିହାରେ ସେ ପ୍ରବନ୍ଧ 'ରକ୍ତତୀର୍ଥଇରମ' ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ଗବେଷଣାତ୍ମକ ନିବନ୍ଧ** - Feudatory states of orissa under the British rule

ରକ୍ତତୀର୍ଥ ଇରମ୍, ଓଡ଼ିଶା ଇତିହାସରେ କେତୋଟି ରୋମାଞ୍ଚକର କାହାଣୀ, ବିପ୍ଳବୀ ଧରଣୀଧର, ଇତିହାସ ପୃଷ୍ଠାରେ ପିପିଲି । ଇତିହାସ ତଥ୍ୟମୂଳକ ନିବନ୍ଧ - ପୃଥିବୀ ଇତିହାସ, ଭାରତ ଇତିହାସ, ଭାରତର ସ୍ୱାଧୀନତା ସଂଗ୍ରାମ ଓ ଜାତୀୟ ସଂହତି, ଆଧୁନିକ ଭାରତ ଇତିହାସ, ଭାରତର ସାମାଜିକ ଓ ସାଂସ୍କୃତିକ ଇତିହାସ ।



# ସୁରେନ୍ଦ୍ର ନାଥ ଦ୍ୱିବେଦୀ
## (୧୯୧୩)

ଜଣେ ବିଶିଷ୍ଟ, ସ୍ୱାଧୀନତା ସଂଗ୍ରାମୀ, ସମାଜବାଦୀ ଆନ୍ଦୋଳନର କର୍ଣ୍ଣଧାର, ରାଜନୀତିଜ୍ଞ ଭାବରେ ସେ ପରିଚିତ । ସେ ସାମ୍ବାଦିକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ, ଆନନ୍ଦବଜାର, ଅମୃତବଜାର ପତ୍ରିକା, ନେସନାଲ୍ ହେରାଲ୍ଡ୍ ପ୍ରଭୃତି ବିଶିଷ୍ଟ ଇଂରାଜୀ ସମ୍ବାଦପତ୍ରର ସମ୍ବାଦଦାତା ଭାବରେ ସୁନାମ ଅର୍ଜନ କରିଛନ୍ତି ।

୧୯୮୯ ମସିହାରେ ସେ ଆତ୍ମଜୀବନୀ ଗ୍ରନ୍ଥ 'କାରାଗାରର କାହାଣୀ' ପାଇଁ ଓଡ଼ିଶା ସାହିତ୍ୟ ଏକାଡେ଼ମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଓଡ଼ିଆ ପୁସ୍ତକ - ଶିଶୁକଥା, ବିଚିତ୍ରପାଠ, ଗଳ୍ପସାଗର, କଂଗ୍ରେସ, ସମାଜବାଦ ପଥେ ଏସିଆ, ମୋଜୀବନ ସଂଗ୍ରାମ ଅଗଷ୍ଟବିପ୍ଳବ, ଜୟପ୍ରକାଶଙ୍କ ଜୟ ଯାତ୍ରା ।

ଭ୍ରମଣ ବୃତାନ୍ତ - ରାଜଭବନରୁ ହସ୍ତଲିପି

ଅନୁବାଦ ଗ୍ରନ୍ଥ - ଜବାହରଲାଲଙ୍କ ରଚିତ Autobigraphy ଓ Glimpses of world History ର ଓଡ଼ିଆ ଅନୁବାଦ - ମୋଜୀବନ କାହାଣୀ ଓ ବିଶ୍ୱ ଇତିହାସ

ଇଂରାଜୀଗ୍ରନ୍ଥ - Political corruption in India quest for socialism.



# ନଦୀୟା ବିହାରୀ ମହାନ୍ତି

## (୧୯୩୨)

ଜଣେ ଶିଶୁ ସାହିତ୍ୟିକ ଭାବରେ ସେ ପ୍ରତିଷ୍ଠିତ ପ୍ରତିଭା ୧୯୫୮ ମସିହାରୁ ଆକାଶବାଣୀ କଟକ କେନ୍ଦ୍ରର ଶିଶୁ ବିଭାଗରେ ଶିଶୁ କାର୍ଯ୍ୟକ୍ରମ ପରିଚାଳକ ଭାବରେ ଯୋଗଦାନକରି ସୁନାମ ଅର୍ଜନ କରିଛନ୍ତି । ଓଡ଼ିଶାର ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ବର୍ଦ୍ଧିତ ଓ ଶିଶୁମାନଙ୍କର ରଚନା ପାଇଁ ସେ ଯଶସ୍ୱୀ ହୋଇଛନ୍ତି । ୧୯୮୯ ମସିହାରେ ସେ ଶିଶୁସାହିତ୍ୟ ପୁସ୍ତକ 'ଗପୁଡ଼ି ଓ ପକୁଡ଼ି' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

**ଶିଶୁ ଉପନ୍ୟାସ** - ସପନ ଗୁଡ଼ି, ଗପୁଡ଼ି ଓ ପକୁଡ଼ି, ଛଅପା ହାତରେ ଛକଡ଼ି

**କିଶୋର ଉପନ୍ୟାସ** - ଅନନ୍ତ ପଥେ, ଶ୍ରୀମନ୍ତ, ସାଧୁର ଶଗଡ଼

**ନାଟିକା** - ଠେକୁ ମହାରାଜ

**ଶିଶୁ ଗଳ୍ପ** - କୁନାକୁନି କାହାଣୀ ମାଳା, ବଡ଼ଭାଇଙ୍କ କାହାଣୀ ମୁଣି

**କବିତା** - ମିନା ମିନା ମିନା



# ପଣ୍ଡିତ ଦିଗମ୍ବର ମହାପାତ୍ର

## ( ୧୯୨୮ )

ସଂସ୍କୃତ ସାହିତ୍ୟକୁ ପଣ୍ଡିତ ମହାପାତ୍ରଙ୍କ ଅବଦାନ ଅବସ୍ମରଣୀୟ । ସଂସ୍କୃତ ନିବନ୍ଧ ମାନ ରଚନା କରି ସେ ସୁନାମ ଅର୍ଜନ କରିଛନ୍ତି । ରାଷ୍ଟ୍ରଭାଷା ପ୍ରଚାର ପରିଷଦ ଓ୍ୱାର୍ଦ୍ଧା ଦ୍ୱାରା ସେ ୧୯୬୧ ମସିହାରେ 'ରାଷ୍ଟ୍ରଭାଷା ରତ୍ନ' ଉପାଧିରେ ଭୂଷିତ ହୋଇଥିଲେ ସେ ୧୯୭୫ ମସିହାରେ ଅଖିଳ ଭାରତୀୟ ପଣ୍ଡିତ ମହାପରିଷଦ ଦ୍ୱାରା ପଣ୍ଡିତରାଜ ଉପାଧିରେ ସମ୍ମାନିତ । ୧୯୮୯ ମସିହାରେ ସଂସ୍କୃତ ପୁସ୍ତକ 'ସୁରେନ୍ଦ୍ର ଚରିତ ମହାକାବ୍ୟମ' (ସୁରେନ୍ଦ୍ର ସାଏଙ୍କ ବୀରତ୍ୱ ତ୍ୟାଗ ପୂତ ଜୀବନ ଚରିତର କାବ୍ୟ) ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ରଚନାବଳୀ - ସୁରେନ୍ଦ୍ର ଚରିତ ମହାକାବ୍ୟମ, ବ୍ୟନ୍ତରାଗମ୍, ରଂଗରୁଚିରମ୍, ମାନସ ସନ୍ଦେଶମ୍, ଭାବାତୀତ, ଧ୍ୟାନ ଯୋଗଃ, ଅଦ୍ୱୈତ ବୋଧ ବିବେକଃ, ସୁବର୍ଣ୍ଣବଂଗମ୍ ଗଣତନ୍ତ୍ର ବିମର୍ଷଃ, ଭଙ୍ଗେ ରୋଚତେଯଥା, ମହର୍ଷିବାଣୀ, ଋତୁଚକ୍ରମ୍, ଦୁର୍ନୀତି ପୁରାଣମ୍, ମହର୍ଷିଶତକମ୍

ଏଗୁଡ଼ିକ ଭାରତ ସରକାରଙ୍କ ଦ୍ୱାରା ପ୍ରକାଶିତ ।

## ଡଃ ହେମନ୍ତ କୁମାର ଦାସ

## (୧୯୩୭)

ଡଃ ଦାସ ଜଣେ ସମାଲୋଚକ, ନାଟ୍ୟକାର, ତଥା ପ୍ରାବନ୍ଧିକ ଭାବରେ ସ୍ମରଣୀୟ ପ୍ରତିଭା । ୧୯୮୫ ମସିହାରେ ସେ 'ଝଙ୍କାର' ପୁରସ୍କାର, ଜୀବନରଂଗ ପୁରସ୍କାର, ୧୯୯୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ତାଙ୍କର ନାଟକ ଦୁନିଆ ପାଇଁ ସେ ସମ୍ବର୍ଦ୍ଧିତ ହୋଇଛନ୍ତି ।

**ଆକାଶବାଣୀ ଓ ଦୂରଦର୍ଶନ** - ପତ୍ରନୀଡ଼, ଯଯାତି, ଆସ୍ତେ ଆସ୍ତେ, ସୂର୍ଯ୍ୟାସ୍ତ ରତୁର ନାମ ପ୍ରିୟମ୍ବଦା, ଆଷାଢ଼ର ଆତ୍ମକଥା ନାଟକ, ଜୀବନଯେମିତି, ଜୟ ଜୟନ୍ତୀ, ଯୋଗଯୋଗ, ଦୁନିଆ

**ଗଳ୍ପ ଓ ଉପର୍ନ୍ୟାସ** - ସକାଳ ସନ୍ଧ୍ୟାରାତ୍ରି (ଉପନ୍ୟାସ), ମରୁ ତୀର୍ଥ, ଏ ପୃଥିବୀ ଶର ଶଯ୍ୟ ! ନଚିକେତା ସମ୍ବାଦ, ମରଣୋତ୍ତର, ସ୍ମୃତିର ଆକାଶ ।

**ଶିଶୁସାହିତ୍ୟ** - ମନ୍ଦାର ଗଡ଼ରେ ଦିନେ, ଭୂତ ସହ ହାତାହାତି, ଏକଲବ୍ୟ, ଅଭିମନ୍ୟୁ, କାଦମ୍ବରୀ, ବାସବଦତ୍ତା, ଡାହାଣୀର ବଇଁଶୀ

**ସମାଲୋଚନା** - ଓଡ଼ିଆ ନାଟକର ଉଦ୍ଭବ ଓ ବିକାଶ, ଓଡ଼ିଆ ନାଟକର ବିକାଶଧାରା, ଓଡ଼ିଆ ଲୋକ ନାଟକ, ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶ ଧାରା, ଓଡ଼ିଆ ନାଟକର ରୂପ ବିଭବ, ଓଡ଼ିଆ ନାଟକର ରୀତି ଓ ପ୍ରବୃତ୍ତି, ଓଡ଼ିଆ ନାଟକ କୋଷ, ଓଡ଼ିଆ ମଞ୍ଚର ଇତିହାସ ।

## ଡଃ ଗଂଗାଧର ବଳ

## (୧୯୨୭)

ଜଣେ ଗବେଷକ ତଥା ସମାଲୋଚକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ଅଧ୍ୟାପନାସହ ସାରସ୍ୱତ ସାଧନାରେ ସୁନାମ ଅର୍ଜନ କରିଛନ୍ତି । ସେ ୧୯୭୭ ମସିହାରେ ବିଷୁବପୁରସ୍କାର, ୧୯୮୭ ରେ ଜୀବନରଂଗ ପୁରସ୍କାର, ଉତ୍କଳପାଠକ ସଂସଦ ତରଫରୁ ୧୯୯୪ ରେ ସମ୍ବର୍ଦ୍ଧିତ ହୋଇଛନ୍ତି । ୧୯୯୩ ମସିହାରେ ସମାଲେଚନା 'ରୀତିକାବ୍ୟ ସମ୍ପର୍କରେ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଛନ୍ତି ।

**ସମାଲୋଚନା** - ସାହିତ୍ୟାଲୋକ (୧୯୬୪), ସାହିତ୍ୟ ଆଲୋଚନା (୧୯୮୫) ଆଲୋକ ଓ ଆଲୋଚନା (୧୯୭୦), ସାହିତ୍ୟ ଜିଜ୍ଞାସା (୧୯୬୫), ସାହିତ୍ୟ କବିଚାର ଓ ବିମର୍ଶ (୧୯୮୩), ବୈଷ୍ଣବ ସାହିତ୍ୟର ତାତ୍ତ୍ୱିକ ଭୂମିକା (୧୯୮୨), ସାହିତ୍ୟ ତତ୍ତ୍ୱ ଓ ସାହିତ୍ୟ ସମୀକ୍ଷା (୧୯୮୮), ଶ୍ରୀମଦ୍ ଭାଗବତ୍ ଏକ ଅଧ୍ୟୟନ (୧୯୮୯), ରୀତିକାବ୍ୟ ସମ୍ପର୍କରେ (୧୯୯୧), ଆମର ଆଧ୍ୟାତ୍ମିକ ଐତିହ୍ୟ (୧୯୯୦), ସାହିତ୍ୟ ସମାଲୋଚନାର - ଶାସ୍ତ୍ରୀୟ ଭୂମିକା, ନିବନ୍ଧ ଅଷ୍ଟକ (୧୯୯୫) ।



# ଡଃ ଦୀନନାଥ ପାଠୀ

## (୧୯୪୨)

ଖ୍ୟାତନାମ ଚିତ୍ରଶିଳ୍ପୀ ଓ କଳା ଐତିହାସିକ ଭାବରେ ଡଃ ଦନୀନାଥ ପାତୀ ଲବ୍ଧ ପ୍ରତିଷ୍ଠିତ ପ୍ରତିଭା । ୧୯୬୩ ମସିହାରେ ଖଲିକୋଟ ଚାରୁକଳା ବିଦ୍ୟାଳୟର ସରକାରୀ ଡିପ୍ଲୋମା, ଉତ୍କଳବିଶ୍ୱ ବିଦ୍ୟାଳୟରୁ ଇତିହାସରେ ପିଏଚ୍.ଡ଼ି (୧୯୯୨), ବିଶ୍ୱଭାରତୀରୁ କଳା ଇତିହାସରେ ପିଏଚ୍.ଡ଼ି (୧୯୯୧), ରାଜ୍ୟ ସଂଗ୍ରହାଳୟର କଳା ବିଭାଗର କ୍ୟୁରେଟର, ୧୯୭୨-୭୯, ପର୍ଯ୍ୟଟନ ନିଗମର ପ୍ରଚାରରେ ଡିଭିଜନାଲ ମେନେଜର, କେନ୍ଦ୍ରଲଳିତ କଳା ଏକାଡ଼େମୀର ସଚିବ, ଜବାହାରଲାଲ ନେହେରୁ ଫେଲୋ (୧୯୯୭), ଚିତ୍ର ଶ୍ରୀ ରାଧା ପାଇଁ ଶିଖର ସମ୍ମାନ ରାଷ୍ଟ୍ରପତି ଫଳକ (୧୯୮୮) । ଗବେଷଣା ପାଇଁ ଏ.ଏଲ୍.ବା ସମ୍ ସ୍ମୃତି ପୁରସ୍କାର (୧୯୮୬) ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ୧୯୯୩ ବ୍ରିଟିଶ କାଉନ୍‌ସିଲ (୧୯୯୦), ନେହେରୁ ଟ୍ରଷ୍ଟ, ଭିକ୍ଟୋରିଆ ଆଲବର୍ଟ ଲଣ୍ଡନ (୧୯୯୩), ଜାପାନ ଫାଉଣ୍ଡେସନ - (୧୯୯୬) ଆଗତ ବାହାରେ ଲଣ୍ଡନ, ଜାପାନ, ସୁଇଜରଲ୍ୟାଣ୍ଡ, ଷ୍ଟକ୍‌ହୋମ, ମସ୍କୋରେ ଚିତ୍ର ପ୍ରଦର୍ଶନ କରି ଖ୍ୟାତି ଅର୍ଜନ କରିଛନ୍ତି ।

**ଓଡ଼ିଆ ରଚନାବଳୀ** - ଚିୟଡେଇଡି (୧୯୫୯), ନୀଳହ୍ରଦର ଚିତ୍ରକର ଦିଗପହଣ୍ଡିର ଡ୍ରଇଁ ମାଷ୍ଟ୍ରେ - ୧୯୯୦, ଭବଘୁରା ଭବନାଥ - ୧୯୯୨, ସୁନାମାଛ - ୧୯୯୬ ପୁନର୍ନବା (ଉପନ୍ୟାସ) ।

ଇଂରାଜୀ - Mural painting & Orissa - 1982
Traditional paintings - 1990
Essence of Orissan paintings - 1997
Jaganath and the Oriya Aritists - 1982
Sarat Chandra Debo - 1992
Tribal Art - 1991
Ritual painting in Orissa - 1996

## ଡଃ ଶରତ ଚନ୍ଦ୍ର ପ୍ରଧାନ
## (୧୯୩୪)



କବି ଓ ସମାଲୋଚକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ସେ ଝଙ୍କାର ପୁରସ୍କାର, ବିଷୁବପୁରସ୍କାର, ଉତ୍କଳସାହିତ୍ୟ ସମାଜ ଦ୍ୱାରା ସମ୍ମାନିତ, ୧୯୯୪ ମସିହାରେ 'ଯଯାତି' କାବ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

କାବ୍ୟ କବିତା - 'ନଈ ଆଉ ମାଛ, ହଂସ ଓ ସାରସ', ଉର୍ଚ୍ଚୈଃଶ୍ରବା, ଅସ୍ଥିରପାଦ, ଯଯାତି, ଅଭୟଭୟ, ବତ୍ରିଶସିଂହାସନ

ସମାଲୋଚନା - ମଧୁସୃଷ୍ଟି ଅମୂର୍ତ୍ତଦୃଷ୍ଟ, କାବ୍ୟଧାରା ଓ କବିମାନସ ସାହିତ୍ୟ ସଂଗମ, ସାହିତ୍ୟାବର୍ତ୍ତ ।

ଅନୁବାଦ - ପାଶ୍ଚାତ୍ୟ ଶିକ୍ଷାର ସାଂସ୍କୃତି ଇତିହାସ, ପ୍ରାୟୋଗିକ ଭାଷା ବିଜ୍ଞାନର ଦିଗବିଦିଗ ।

ସମ୍ପାଦନା - ବ୍ରଜବିହାରୀ ରଚନାବଳୀ ।

## ବିପିନ ବିହାରୀ ମିଶ୍ର
## ୧୯୪୫



ଗାଳ୍ପିକ ତଥା ଔପନ୍ୟାସିକ ଭାବରେ ସ୍ମରଣୀୟର ପ୍ରତିଭା । ଶ୍ରେଷ୍ଠ ପ୍ରାବନ୍ଧିକ ଭାବରେ ଦୈନିକ ଆଶା ସମ୍ମାନ (୧୯୮୩), ଧରିତ୍ରୀ ପୁରସ୍କାର (୧୯୮୫), ୧୯୯୪ ମସିହାରେ ଉପନ୍ୟାସ ସହରର ଉପକଣ୍ଠେ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ସମ୍ମାନିତ ହୋଇଛନ୍ତି ।

ତୀର୍ଯ୍ୟକ ଦୃଷ୍ଟି - ରମ୍ୟରଚନା - ୧୯୮୨

ଦାରୋଗା ସାହିତ୍ୟିକ - ବ୍ୟଙ୍ଗଗଳ୍ପ - ୧୯୮୪, ହସର ଗୋଧୂଳି - ୧୯୯୬

ଶପଥ ସନ୍ତାନର - ଆଦିବାସୀ ଗଳ୍ପ - ୧୯୮୩

ମନର ମୁକୁର, ୧୯୮୫, ଗୋମତୀର ଶେଷହସ - ୧୯୯୪,

ଅସମ୍ପୂର୍ଣ୍ଣ ଝଙ୍କାର - ୧୯୯୪, ବହୁଦିନପରେ - ୧୯୯୬

ଜନ୍ମମୃତ୍ୟୁ ଓ ଅନ୍ୟାନ୍ୟଗଳ୍ପ - ୧୯୯୬, ଧୂଳିଜମିଥିବା ବହିଟିଏ - ୧୯୯୭

ଶିଶୁସାହିତ୍ୟ - ଗର୍ବରୁ ପରାଭବ, ବିଚିତ୍ର ଜୀବଜନ୍ତୁ (୧୯୯୬)

ହିନ୍ଦୀଅନୁଦିତ - ଶପଥ ସନ୍ତାଲକୀ, ୧୯୮୭, ମନକୀ ଆଇନେ ମେ ୧୯୯୧

## ଶ୍ରଦ୍ଧାକର ସୂପକାର

### (୧୯୧୪)



୧୯୩୩ ମସିହାରେ ସ୍ନାତକ ପାଟଣା ବିଶ୍ୱବିଦ୍ୟାଳୟ ଓ ଇଂରାଜୀରେ ସ୍ନାତକୋତ୍ତର ଡିଗ୍ରୀ, ୧୯୩୭ ଆଇନରେ ସ୍ନାତକୋତ୍ତର ଡ଼ିଗ୍ରୀ ଓ ୧୯୭୮ରେ ଆଇନ୍‌ରେ ପିଏଚ୍.ଡି ଲାଭ ୧୯୪୯-୫୧, ୧୯୫୨-୫୭, ୧୯୮୫-୯୦, ଓଡ଼ିଶା ବିଧାନସଭାର ସଦସ୍ୟ, ଅଧ୍ୟାପକ ଲାଲା ଲାଜପତ ରାୟ ଆଇନକଲେଜ, କୁଳପତି ଜଗନ୍ନାଥ ସଂସ୍କୃତ ବିଶ୍ୱ ବିଦ୍ୟାଳୟ ୧୯୮୩, ପ୍ରବୀଣ ସାମ୍ବାଦିକ, ହୀରାଖଣ୍ଡର ସମ୍ପାଦକ, ସାହିତ୍ୟ ସାଧକ ଭାବରେ ସୁନାମ ଅର୍ଜନ କରିଛନ୍ତି । ଆତ୍ମଜୀବନୀ 'ଅସ୍ତରାଗ' ପାଇଁ ୧୯୯୪ ମସିହାରେ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଗଳ୍ପାଞ୍ଜଳି, ବିଷକନ୍ୟା, ଜୁଆର ଭଟ୍ଟା, ଗୋଟିଏ କରୁଣ ରାତି,

ନାଟିକ - ସୁରେନ୍ଦ୍ର ସାଏ, କସ୍ତୁରୀମୃଗ (ଏକାଙ୍କିକା)

ଆତ୍ମଜୀବନୀ - ଅଧମ ପୁରୁଷ, ଅସ୍ତରାଗ

ଭ୍ରମଣ ସାହିତ୍ୟ - ତୀର୍ଥ ପଥେ, ଋଷିଆ ଭ୍ରମଣ, ଆମେରିକା ଅନୁଭୂତି

ରମ୍ୟରଚନା - ସୂପ, ନରୋତ୍ତମ ଦାସ ରଚିତ

କବିତା - ପ୍ରେମର ଅନେକ ରଂଗ



## ଦେବ୍ରାଜ ଲେଙ୍କା

### (୧୯୩୦)

ଓଡ଼ିଆ ମାଟିର ପରମ୍ପରା, ସଂସ୍କୃତି ଓ ଚଳଣି ପ୍ରତି ଗଭୀର ମମତ୍ୱବୋଧ ପାଇଁ ସେ ବେଶ୍ ଜନପ୍ରିୟ ହୋଇପାରିଛନ୍ତି ।

୧୯୯୪ ମସିହାରେ ତାଙ୍କର ଗଳ୍ପପୁସ୍ତକ ଗାଁ ଗାଁ ଆହା ଆହା ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କାର ଲାଭ କରିଛନ୍ତି ।

ଉପନ୍ୟାସ - ଜୋକର, ଅନ୍ଧ ମୁହାଁଣୀ, ଜୀବନରଂଗ, ଖେଳ, ପ୍ରେମ ନଗରର ଅନେକକଥା, ଧୂିର ପୃଥିବୀର ତରା, ଅନ୍ୱେଷା ଅନ୍ୱେଷଣ ।

ଗଳ୍ପ ସଂକଳନ - ଦେବ୍ରାଜର ଅର୍କେଷ୍ଟ୍ରା, ଗୋଟିଏ ବାକ୍ସ ଗପ, ଗାଁ ଗାଁ ଆହା ଆହା,



# ଶତ୍ରୁଘ୍ନ ନାଥ
## (୧୯୧୫)

ଶିକ୍ଷାବିତ୍, ଅଧ୍ୟାପକ, ସାରସ୍ୱତ ସାଧନା କ୍ଷେତ୍ରରେ ଜଣେ ପ୍ରତିଷ୍ଠିତ ପ୍ରତିଭା । ଓଡ଼ିଶାର ବିଭିନ୍ନ ଶିକ୍ଷାନୁଷ୍ଠାନରେ ଅଧ୍ୟାପନା, ଓଡ଼ିଶା ମୌଳିକ ଶିକ୍ଷା ସଂଗଠନ, ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟକ୍ଷ ଅଧ୍ୟାପନାରେ ସୁନାମ ଅର୍ଜନ କରିଛନ୍ତି । ୧୯୯୪ ମସିହାରେ ସେ ପ୍ରବନ୍ଧ 'ବିଶ୍ୱ ଓ ବ୍ୟକ୍ତି' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ରଚନାବଳୀ - ଶିକ୍ଷକ ସହାୟକ ପ୍ରବନ୍ଧ - (୧୯୪୬), ଜଗତରେ ଭାରତ ୧୯୫୧, ଆମ ଯୁଗକଥା (୧୯୫୮-୬୭), ବିଶ୍ୱବନ୍ଧୁ - ୧୯୫୨, ମୌଳିକ ଶିକ୍ଷାନୀତି-୧୯୫୭, ଆମଭାଷାବିଭବ - ୧୯୫୯, ଜୀବନଶିକ୍ଷା - ୧୯୮୫, ବିଶ୍ୱ ଓ ବ୍ୟକ୍ତି - ୧୯୯୧, ନିଜଗାଁ ନିଜମା - ୧୯୮୭, ଆମ ସମୟ, ପିଲାଙ୍କ ବ୍ରହ୍ମଜ୍ଞାନ ଶିକ୍ଷା - ୧୯୯୬, ଭକ୍ତକବି ଭୀମ ଭୋଇ ।

ଇଂରାଜୀ - Research Problems in Basic Education

The New Dictionary,

Educations Styles and Strategies

Contemporary Conciousness in Education



## ଫନୀ ମହାନ୍ତି

### (୧୯୪୪)

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କାବ୍ୟିକ ପରମ୍ପରାର ଜଣେ ସଫଳ ଦାୟାଦ । ଦର୍ଶନଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ଓ ପୁରୁଷ ଓ ପୁରୁଷୋତ୍ତମ ତତ୍ତ୍ୱ ଉପରେ ପି.ଏଚ୍.ଡି ଡିଗ୍ରୀ ଲାଭ । ୧୯୯୫ ମସିହାରେ ବିଷାଦଯୋଗ କବିତା ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ।

ଗଳ୍ପସଂକଳନ - କାଳସର୍ପ

କବିତା - ମାନିଚିତ୍ର, ସ୍ୱୟମ୍ବର, ବିଦଗ୍ଧ ହୃଦୟ, ରୁଚିର ନଗର, ପ୍ରିୟତମା, ମାୟାଦର୍ପଣ, ରୁବିପାଇଁ କେତୋଟି କବିତା, ବିଷାଦଯୋଗ, ଅହଲ୍ୟା, ଚିତ୍ର ପ୍ରତିମା ।



## ବଳରାମ ପଟ୍ଟନାୟକ

### (୧୯୨୮)

ଔପନାସିକ ଭାବରେ ଜଣେ ପ୍ରତିଷ୍ଠିତ ପ୍ରତିଭା । ୧୯୯୫ ମସିହାରେ 'ଚରୈବେତି' ଉପନ୍ୟାସ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

ଉପନ୍ୟାସ - ଜଣା ଅଜଣା, କ୍ରନ୍ଦନ, ପ୍ରତିବିମ୍ବ, ଅପଦାର୍ଥ, ମନର ମଳୟ, ଅରକ୍ଷ, କେତେଯେ ଅକୁହା କଥା, ପ୍ରତିଧ୍ୱନି ମନଅରଣ୍ୟ, ଅନ୍ଧକାରର ଜ୍ୟୋତ୍ସ୍ନା, ଅସ୍ତାଚଳର ସୂର୍ଯ୍ୟ, ତିନି ଅଧ୍ୟାୟ, ମହାନଦୀର ଢେଉ, ରୂପାଲି ଛକର ଇତିକଥା, ଅନାଦି ଅନନ୍ତ, ପାର୍ଶ୍ୱଦେବତା, ନିଃସଂଗ ଅପରାହ୍ନ, ଚୈରୈବେତି, ଅନେକ ରୂପେ ରୂପାୟ, ଏକାଏକା, ଏବଂ ଅନ୍ୟାମାନେ, ଦୟାନଦୀ ବହିଯାଏ ଧୀରେ, ହିମାଳୟର ଅଶ୍ରୁ, ପ୍ରତୀକାବ୍ୟ ।



# ଡଃ ହୃଷୀକେଶ ପଣ୍ଡା

## (୧୯୫୫)

ଓଡ଼ିଆ ସାହିତ୍ୟରେ ଜଣେ ସ୍ମରଣୀୟ ପ୍ରତିଭା । ଉତ୍କଳ ବିଶ୍ୱବିଦ୍ୟାଳୟରୁ ରସାୟନ ଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ପରେ ୧୯୭୯ ମସିହାରେ ଆଇ.ଏ.ଏସ୍ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି ଓଡ଼ିଶାର ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଭାଗରେ ରହି ସୁନାମ ଅର୍ଜନ କରିଛନ୍ତି । ଗଳ୍ପ, ଉପନ୍ୟାସ, ନାଟକ ରଚନା କରି ଯଶସ୍ୱୀ ହୋଇଛନ୍ତି । ୧୯୯୫ ମସିହାରେ 'ପୌଢ଼ ଭାବନା' ଗଳ୍ପ ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ଉପନ୍ୟାସ** - ଶୂନ ସଂଗେ ସାମୟିକ ସନ୍ଧି, ହରିଣ ପିଠିରେ ଅଜଣା ସୂର୍ଯ୍ୟାସ୍ତକୁ, ସୁନାପୁଟର ଲୋକେ, ସବୁର୍ଣ୍ଣ ଦ୍ୱୀପ, ଶୃତ ୧୯୯୪, ହସ ଓ ଇତିହାସ,

**ଗଳ୍ପ** - ବାହାରେ ଛିଡ଼ା ହୋଇଥିବା ଲୋକ, ରେବତୀ, ରାଜ ପୁତ୍ର, ସାହାବ ଦେବତା, ପୌଢ଼ ଭାବନା, ବୟସ୍କଙ୍କ ପାଇଁ ଶିଶୁକାହାଣୀ, ଶୂନ୍ୟତାର ପାଷାଡ୍ୟକୁ ।

**ନାଟକ** - ଶବାନ୍ତର, ୧୭୯୯, ଅଥବା ପାଞ୍ଚଜଣ ଇଂରେଜ, ବ୍ରହ୍ମ ରାକ୍ଷସ, ଭାସ୍କୋଡାଗାମା ।

ଅନ୍ୟାନ୍ୟ - Arts and crafts of Ganjam Dissrict.



# ଡଃ ବନବିହାରୀ ପଣ୍ଡା

## (୧୯୪୦)

ଜଣେ ନାଟ୍ୟକାର, କବି, ଗୀତିକାର ଭାବରେ ଡଃ ପଣ୍ଡା ସ୍ମରଣୀୟ ପ୍ରତିଭା । ରସାୟନ ଶାସ୍ତ୍ରରେ ସ୍ନାତକୋତ୍ତର ଉପାଧି ଲାଭ ଓ Ph.D ଡିଗ୍ରୀ ହାସଲ କରି ଅଧ୍ୟାପନାରେ କିଛିଦିନ ଅତିବାହିତ କରିଛନ୍ତି । ୧୯୬୩ ମସିହାରେ ଆଇ.ପି.ଏସ୍.ରେ ଯୋଗଦାନ କରି ଯଶ ଅର୍ଜନ କରିଛନ୍ତି । ୧୯୯୫ ମସିହାରେ ତାଙ୍କର 'ଗେଷ୍ଟ ହାଉସ' ନାଟକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ କରିଛନ୍ତି ।

**କବିତା** - ସାଗରତୀରେ, ପଉଷ ରାତିର ଜହ୍ନ, ସ୍ୱପ୍ନ ଅନେକ ରଂଗର

**ଗଳ୍ପ** - ବିଶ୍ୱ ଅପରାଧ କାହାଣୀ, ପ୍ରତିହିଂସାର ବହ୍ନି, ଅଲୌକିକ କାହାଣୀ,

**ଉପନ୍ୟାସ** - ଗୋଟିଏ ସକାଳର କାହାଣୀ

**ନାଟକ** - ଆଜିର ସମ୍ବାଦ, ରକ୍ତନଦୀ, ସମାଧାନ, କାହାଣୀ ଗୋଟିଏ ଦିନର, ମୁଖ୍ୟ ଅତିଥି, ସୂର୍ଯ୍ୟ ପରାଗ ପରେ, ଅରଣ୍ୟ, ଗେଷ୍ଟହାଉସ, କାହାଣୀ ଦୁଇଟି ଆଖିରେ, ଅଭିନୟ, ସୁବର୍ଣ୍ଣରେଖା, ଅଭ୍ୟର୍ଥନା, ସୁନା କଇଁଚ, ସେ ଆମମାନଙ୍କ ଭିତରେ, କାହାଣୀ ଦୁଇଟି ମନର ସ୍ମୃତି ଗୋଟିଏ ଫୁଲର, ଗୋଟିଏ ଝରାଫୁଲର କାହାଣୀ ।



# ଡଃ ବେଣୀ ମାଧବ ପାଢ଼ୀ

## (୧୯୧୯)

ଜଣେ ସମାଲୋଚକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ଉତ୍କଳବିଶ୍ୱ ବିଦ୍ୟାଳୟରୁ ଓଡ଼ିଆ ଏମ୍.ଏ ଓ ପି.ଏଚ୍.ଡି ଡିଗ୍ରୀ ଲାଭ ଓ ବନାରସ ବିଶ୍ୱବିଦ୍ୟାଳୟରୁ ସଂସ୍କୃତିରେ ଏମ୍.ଏ ଡିଗ୍ରୀଲାଭ । ସଂସ୍କୃତ ଓ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଅନନ୍ୟ । ୧୯୯୫ ମସିହାରେ ''ପୁରାତନ କଳିଙ୍ଗର ସାମାଜିକଇତିବୃତ୍ତି'' ପ୍ରବନ୍ଧ ପୁସ୍ତକ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

**ପ୍ରବନ୍ଧ ଓ ସମାଲୋଚନା** - ଦାରୁ ଦେବତା, ଧୀ ଓ ଧୀଷଣା, ସନ୍ଧାନ ଓ ସମୀକ୍ଷା, ସୃଷ୍ଟି ଓ ଦୃଷ୍ଟି, ସଂସ୍କୃତି ଓ ଧର୍ମ, ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ, ଭଂଜୀୟ କାବ୍ୟ ଭାବନା, ଓଡ଼ିଶାର ସାହିତ୍ୟ ।

**ଭାଷାତତ୍ତ୍ୱ ମୂଳକ** - ଉତ୍ତରା ପ୍ରାକୃତ, ଓଡ଼ିଆ ଭାଷାର ରୂପତତ୍ତ୍ୱ



## ଶ୍ରୀମତୀ ମାନସୀ ଦାସ

**(୧୯୬୦)**

କଥାକାର ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ୧୯୯୬ ମସିହାରେ ଉପନ୍ୟାସ 'ନିସ୍ତବ୍ଧ କୋଳାହଳ' ପାଇଁ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ତ୍ରିଶଙ୍କୁର ସ୍ୱର୍ଗ - ୧୯୮୧
ଚନ୍ଦ୍ରାବତୀର କାବ୍ୟ - ୧୯୮୩
ଏକାକୀ ନରୋତ୍ତମ - ୧୯୮୯
ଅଦୃଶ୍ୟ ଦୃଶ୍ୟ - ୧୯୯୬
**ଉପନ୍ୟାସ** - ବିଭାଜ୍ୟ - ୧୯୮୧
ଗୁପ୍ତ ଜୟଦେବ - ୧୯୯୪
ନିସ୍ତବ୍ଧ କୋଳାହଳ - ୧୯୯୪
ତୃତୀୟ ପାହାଚ - ୧୯୯୬
ନିଜ ନିଜର ସୂର୍ଯ୍ୟ -୧୯୯୮
**ଭ୍ରମଣ ବୃତ୍ତାନ୍ତ** - ଉଇଲିୟମଥେଲର ଦେଶ - ସୁଇଜର ଲାଣ୍ଡ - ୧୯୯୩

## ଚନ୍ଦ୍ରଶେଖର ନନ୍ଦ

**୧୯୪୨**



ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟର ଜଣେ ସଫଳ ସ୍ରଷ୍ଟା । ୧୯୬୭ ରୁ ୧୯୭୧ ପର୍ଯ୍ୟନ୍ତ ଭାରତ ସରକାରଙ୍କ ସାମରିକ ବାହିନୀରେ ଇଞ୍ଜିନିୟରିଂ ରେଜିମେଣ୍ଟର କ୍ୟାପ୍‌ଟେନ୍ ଭାବରେ ଅଧିଷ୍ଠିତ । ୧୯୯୬ ମସିହାରେ ସେ ନାଟକ 'ସେମାନଙ୍କ ଆଖିରେ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ନାଟକ** - ଅନ୍ତଃ ସଲିଳା, ଅସଂଲଗ୍ନ, ଯୁଦ୍ଧବନ୍ଦୀ, ଐତିହାସିକ ଏ ଦୁର୍ଗ ବାରବାଟୀ, ଆମେସବୁ ଚନ୍ଦ୍ରସେଣା, ରଜନୀଗନ୍ଧା, କୃଷ୍ଣା, ନାଆଁ, ସେମାନଙ୍କ ଆଖିରେ, କସ୍ତୁରୀ, କଥା କଥାରେ

**ଉପନ୍ୟାସ** - ଆର୍ମି ଅନୁଭୂତି
**ଗଳ୍ପ** - ଅଭିସାର ପଳାଶ ଫୁଲର
**ପ୍ରବନ୍ଧ** - ବୈଦେହୀଶ ବିଳାସର ତ୍ରିକନ୍ୟା



# ଡଃ ବୈଦ୍ୟନାଥ ମିଶ୍ର

## (୧୯୨୪)

ଜଣେ ପ୍ରାବନ୍ଧିକ ଭାବରେ ଲବ୍ଧ ପ୍ରତିଷ୍ଠିତ ପ୍ରତିଭା । ତାଙ୍କର ଶତାଧିକ ଗବେଷଣାତ୍ମକ ପ୍ରବନ୍ଧ ଇଂରାଜୀ ପତ୍ର ପତ୍ରିକାରେ ପ୍ରକାଶିତ । ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟର ଅର୍ଥନୀତି ବିଭାଗରେ ପ୍ରଫେସର ରୂପେ କାର୍ଯ୍ୟ ନିର୍ବାହ କରିସୁନାମ ଅର୍ଜନ କରିଛନ୍ତି । ସେ ୧୯୭୪ରେ 'ଝଙ୍କାର' ପୁରସ୍କାର ଓ ୧୯୯୬ ମସିହାରେ ପ୍ରବନ୍ଧ 'ଆଧୁନିକ ସଭ୍ୟତାର ଯନ୍ତ୍ରଣା' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ରଚନାବଳୀ** - ଶାସନ ଓ ସଂସ୍କାର, ସମାଜ ଓ ସଭ୍ୟତା, ସମାଜବାଦ ଓ ଗଣତନ୍ତ୍ର, ଆର୍ଥନୀତିକ ଯୋଜନା ଭାରତର ସମ୍ବିଧାନ, ସମାଜ ଶାସନ ଓ ସଂସ୍କାର, ଭାରତର ଆର୍ଥନୀତିକ ସମସ୍ୟା, ପୁଞ୍ଜିବାଦ ସମାଜବାଦ ଓ ଗାନ୍ଧିବାଦ, ସାମାଜିକ ମୂଲ୍ୟବୋଧ, ବିଦେଶ ଯାତ୍ରା, ରାଜନୀତିର ସୁଖଦୁଃଖ, ଚନ୍ଦ୍ରାଲୋକରେ ଚହଳ, ରାମ ରାଜ୍ୟରେ ଅଶାନ୍ତି, ପାଶ୍ଚାତ୍ୟ ଅନୁଭୂତି, ଆଧୁନିକ ସଭ୍ୟତାର ଯନ୍ତ୍ରଣା, ସ୍ମୃତିତୀର୍ଥ ।



## ଡଃ କେବଶ ଚନ୍ଦ୍ର ମେହେର

ସମାଲୋଚକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ସାହିତ୍ୟ କୃତି ପାଇଁ ସେ ବହୁ ସାଂସ୍କୃତିକ ଅନୁଷ୍ଠାନ ପକ୍ଷରୁ ପୁରସ୍କୃତ ହୋଇଛନ୍ତି । ସେ ଅନୁବାଦ ପୁସ୍ତକ 'କନ୍ନଡ଼ ଲଘୁକଥା' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ୧୯୯୬ ମସିହା ପାଇଁ ସମ୍ବର୍ଦ୍ଧିତ ହୋଇଛନ୍ତି ।

**ସମାଲୋଚନା** - ରାଧାନାଥ ଓ ଚନ୍ଦ୍ରଭାଗା, ପୁରାଣ ରହସ୍ୟ, କାଳଜୟୀ କବି ଗଂଗାଧର, ମେହେର ସାହିତ୍ୟ, ଜୀବନ ଓ ପ୍ରତିଭା, କିଚ କବଧ ଏକ ସମୀକ୍ଷା ।

**କବିତା** - ଛାୟାଲୋକ, ସୁଷମା ଫଲ୍‌ଗୁର ଫୁଆରା, ଗିରି ନଦୀ, ଉତ୍ତିଷ୍ଠିତ

**ନାଟକ** - ସୁପର୍ଣ୍ଣା, କ୍ରାନ୍ତି ଚକ୍ର

**ଅନୁବାଦ** - ଅହଲ୍ୟା, କନ୍ନଡ଼ ଲଘୁକଥା

**ଇଂରାଜୀ** - Bhakti, The Devotion of Gangadhar, the sign and the shoot. The orissan Art of weaving



# ରଞ୍ଜିତା ନାୟକ
## (୧୯୫୫)

କବି ଓ ସମାଲୋଚକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା ତାଙ୍କର ଅନେକ କବିତା ଇଂରାଜୀ, ବଂଗଳା, ହିନ୍ଦୀ, ମରାଠୀ, ଭାଷାରେ ଅନୂଦିତ ହୋଇଛି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ୧୯୯୭ ମସିହାରେ କବିତା ପୁସ୍ତକ 'ଝଡର ଆକାଶ' ପାଇଁ ସେ ସମ୍ମାନିତ ହୋଇଛନ୍ତି ।

କବିତା - ଅଶାନ୍ତ ଅପରାହଣ, ଦୃଶ୍ୟ-ଦୃଶ୍ୟାନ୍ତର ଝଡ଼ର ଆକାଶ, ଅତଳତଳ, ହାଠାତ୍ ଈଶ୍ୱର ପାଲଟିଯିବା ମୋହରେ, ତମ ଠିକଣା ମୋତେ କାହିଁ ବା ଜଣା, ଈଶ୍ୱର ଈଶ୍ୱରୀୟ,

ସମାଲୋଚନା - ଓଡ଼ିଆ ସାହିତ୍ୟରେ ନାରୀ, କୁନ୍ତଳାକଥା ପ୍ରତିଭା, ଓଡ଼ିଆ ଉପନ୍ୟାସ ର ଇତିବୃତ୍ତ, ସମୟରୁ ସମୟକୁ, ସମାଲୋଚନା ସମ୍ଭାର ।

ଅନୁବାଦ - ବିଭୂତି ଭୂଷଣ ବନ୍ଦୋପାଧ୍ୟାୟ



# ସୁରେନ୍ଦ୍ର ନାଥ ଶତପଥୀ

**୧୯୩୨**

ଏକଧାରରେ ଜଣେ ପ୍ରାବନ୍ଧିକ, ଗାଳ୍ପିକ, ଔପନ୍ୟାସକ ତଥା ଅନୁବାଦକ ଭାବରେ ସ୍ମରଣୀୟ ପ୍ରତିଭା । ୧୯୯୭ ମସିହାରେ ସେ ଉପନ୍ୟାସ 'ମନ୍ଥରା' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ପ୍ରବନ୍ଧ - ଭାରତୀୟ ସଂସ୍କୃତି - ୧ମରୁ ୮ମ,
ସଂସ୍କାର ଓ ସଂସ୍କୃତି, ଧର୍ମ ଓ ସଂସ୍କୃତି

କବିତା - ଶିଖା ଓ ଶାଖା

ଉପନ୍ୟାସ - ମନ୍ଥରା, ଜାନକୀ, ଶର୍ମିଷ୍ଠା, ରାବଣ

ଗଳ୍ପ - ଦାସବଦତ୍ତା, ବୌଦ୍ଧ ଜାତକ ଗଳ୍ପ (୧-୧୩ଖଣ୍ଡ)
ହଳଦୀଘାଟରେ ସନ୍ଧ୍ୟା

ଶିଶୁ ସାହିତ୍ୟ - ବୈଦିକ କାହାଣୀ ମାଳା (୧ମ-୨ୟ ଭାଗ)
ଶିଶୁ ସାରିକା, ଗୋଟିଏ ବଗିଚା ଓ ଅନେକ ଫୁଲ

ଅନୁବାଦ - ଈଶ ଉପନିଷଦ, କେନ ଉପନିଷଦ, ଧର୍ମପଦ



# ଶ୍ରୀ ସହଦେବ ସାହୁ
## (୧୯୪୧)

ଜଣେ ସ୍ତମ୍ଭକାର ତଥା ସାରସ୍ୱତ ସାଧକ ଭାବରେ ସୁନାମ ଅର୍ଜନ କରିଛନ୍ତି । ସମାଜ, ପ୍ରଜାତନ୍ତ୍ର, ଧରିତ୍ରୀ, ସମୟ, ପ୍ରଗତିବାଦୀ, ଦି-ଟେଲିଗ୍ରାଫ୍‌ର ସ୍ତମ୍ଭକାର ଭାବରେ ପରିଚିତ । ୧୯୯୭ ମସିହାରେ ପ୍ରବନ୍ଧ ପୁସ୍ତକ 'ସୃଷ୍ଟିର ଜାତକ ଓ ଜୀବନ ଘଡ଼ି' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି ।

**ଗଳ୍ପ** - ଏଦିଗ ସେ ଦିଗ - ୧୯୮୩, ଆକାଶ କଇଁଆ - ୧୯୮୫, ଖଜୁରୀ ଗଛର ଶେଷ ପାହାଚ - ୧୯୯୧, କଣ୍ଟାବାଡ଼ - ୧୯୯୭,

**ଭ୍ରମଣ** - ଭିନ୍ନଦେଶ ଭିନ୍ନ ଦୃଷ୍ଟି ୧୯୯୦

**ପ୍ରବନ୍ଧ** - ତାରକା ଯୁଦ୍ଧ ଓ ଅନ୍ୟାନ୍ୟ ପ୍ରବନ୍ଧ, (୧୯୮୬)

ସୃଷ୍ଟିରଜାତକ ଓ ଜୀବନଘଡ଼ି - (୧୯୯୫), ବିଜ୍ଞାନ - ଅଦ୍ଭୁତ ପ୍ରାଣୀଜଗତ - ପିଲାଙ୍କ ବିଜ୍ଞାନ, ବିଜ୍ଞାନ ରହସ୍ୟ - ୧୯୯୧, ପାଗଳା ଆମ୍ବ - (ଅନୁବାଦ)



## ବ୍ରହ୍ମାନନ୍ଦ ଦାସ

### (୧୯୩୯)

କବି ଭାବରେ ଜଣେ ପ୍ରତିଷ୍ଠିତ ପ୍ରତିଭା । ଇଂରାଜୀ, ବଙ୍ଗଳା, ହିନ୍ଦୀ, ସଂସ୍କୃତରୁ ବହୁ କାବ୍ୟକବିତା ଓଡ଼ିଆକୁ ଅନୁବାଦକରି ସୁନାମ ଅର୍ଜନ କରିଛନ୍ତି । ଆଦିବାସୀ କବିତାକୁ ଅନୁବାଦ କରି ଲୋକଲୋଚନକୁ ଆଣିଛନ୍ତି । ୧୯୯୭ ମସିହାରେ ଅନୁବାଦ ପାଇଁ "ପୃଥିବୀର ଆଦିବାସୀ ଲୋକକବିତା" ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

କବିତା - ଧରଣୀ ଓ ଝରଣା, ଦ୍ରାକ୍ଷାଲତାର କାବ୍ୟ, ଚିତ୍ରମାଳାର ଗୀତ, ଅନ୍ତରଙ୍ଗ ପୃଥିବୀ, ଝର୍କାବାହାରେ, ସକାଳ ଆସନ୍ନ ନୂତନ ପୃଥିବୀର କବିତା (ଅନୁବାଦ), ଛାୟାସୂର୍ଯ୍ୟ (ଅନୁବାଦ), ପୃଥିବୀର ଆଦିବାସୀ ଲୋକକବିତା (ଅନୁବାଦ) ଗ୍ରୀକ୍ କବିତା (ଅନୁବାଦ)

ପ୍ରବନ୍ଧ - ସୃଷ୍ଟି ଓ କୃଷି

## ଯୁଗଳ କିଶୋର ଦତ୍ତ

### (୧୯୨୮)



ଅନୁବାଦକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ୩୫୦ରୁ ଊର୍ଦ୍ଧ୍ୱ ଅନୁଦିତ ଗଳ୍ପ ପାଞ୍ଚଖଣ୍ଡ ଅନୁଦିତ ଉପନ୍ୟାସ ପ୍ରକାଶିତ । ସେ ୧୯୯୭ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା 'ଗନଗଣମନ' ଅନୁବାଦ ପାଇଁ ପୁରସ୍କୃତ ହୋଇଛନ୍ତି ।

କବିତା - ମାନସୀ, ଶତାବ୍ଦୀର ପ୍ରେମ,

ଗଳ୍ପ - ଗାଁ ହସେ, ଏକାନ୍ତସତ୍ୟ, ଅନେକ ସନ୍ଧ୍ୟାର ଆକାଶ,

ଅନୁବାଦ - ବିମଳ ମିତ୍ରଙ୍କ ଶ୍ରେଷ୍ଠଗଳ୍ପ, ଓଡ଼ିଶାର ନିର୍ବାଚିତ ଗଳ୍ପ ସ୍ତ୍ରୀ, ଆସାମୀହାଜିର, ରଙ୍ଗାବଦଳ, ଜନଗଣମନ, ମଝିଆଦିଦି, ଦେବଦାସ, ଜନଅରଣ୍ୟ, ସମୁଦ୍ର ତୀରେ, କାଳବେଳା



# ଅନାଦି ସାହୁ
## (୧୯୪୦)

ସର୍ବଭାରତୀୟ ପୁଲିସ ସେବାରେ କାର୍ଯ୍ୟରତ ହୋଇ ସୁନାମ ଅର୍ଜନ କରିଛନ୍ତି । ସାରସ୍ୱତ ସାଧନାରେ ଲିପ୍ତରହି ଯଶସ୍ୱୀ ହୋଇଛନ୍ତି । ୧୯୯୮ ମସିହାରେ ଛିନ୍ନନାଗ ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଉପନ୍ୟାସ - ଜଙ୍ଗଲି ସହର, ମୁଣ୍ଡ ମେଖଳା, ପାଣ୍ଡୁର ବଳୟ, ଶୋଣିତ ଫଲ୍‌ଗୁ, କ୍ଷୁଧା, କ୍ଷଣ ଭଂଗୁର, ବରୁଣ, ଜରାସନ୍ଧ, ତାଣ୍ଡବ, ପଛକୁ ଅନା, ରାକାରାୟ, ଛିନ୍ନନାଗ

ରମ୍ୟରଚନା - ପାନଖିଆ ଖର୍ଚ୍ଚ, ନ ଦେଖିଲା ପୁଏ ଦେଖ, ଏଣ୍ଡୁଅ

ଗଳ୍ପ - ପାଣ୍ଡୁର ବଳୟ, ଚକାଡ଼ୋଳା

ଶିଶୁଗଳ୍ପ - ପାରିବା ପିଲା

## ଡଃ ବିଜୟ ପ୍ରସାଦ ମାହାପାତ୍ର

**(୧୯୩୮)**



ଗାଳ୍ପିକ ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ପ୍ରାବନ୍ଧିକ ଭାବରେ ମଧ ସେ ବେଶ୍ ସୁନାମ ଅର୍ଜନ କରିଛନ୍ତି । ୧୯୯୮ ମସିହାରେ ଓଡ଼ିଶାସାହିତ୍ୟ ଏକାଡ଼େମୀ ଦ୍ୱାରା ସେ 'ଅନ୍ୟସ୍ରୋତରଗଳ୍ପ' ପାଇଁ ସମ୍ମାନିତ ହୋଇଛନ୍ତି ।

ଗଳ୍ପ - ପ୍ରେମଗଳ୍ପ, ଗୋଲାପବଗିଚାର ଗଳ୍ପ, ପୁରୀର ଗଳ୍ପ, କଣ୍ଢେଇଙ୍କ ଗଳ୍ପ, ଅଦିନିଆ ଗଳ୍ପ, ଅନ୍ୟସ୍ରୋତର ଗଳ୍ପ, ମୃଗତୃଷ୍ଣାର ଗଳ୍ପ,

ପ୍ରବନ୍ଧ - ଓଡ଼ିଆ ଭାଷା ତାତ୍ତ୍ୱିକ ପ୍ରବନ୍ଧ, ମାତୃଭାଷା ଓଡ଼ିଆ, ଓଡ଼ିଆ ଭାଷା ବିଭବ, ପଣ୍ଡିତନୀଳକଣ୍ଠଙ୍କ ଓଡ଼ିଆ ଭାଷାତତ୍ତ୍ୱ

ଅନୁବାଦ - ଭୟାନକ ଗଳ୍ପ, ନମ୍ମାଲ ଊର, ତାମିଲ ସାହିତ୍ୟର ଇତିହାସ

## ଡଃ ପ୍ରଦୀପ ଦାଶ



କେବଳ ଗାଳ୍ପିକ ଭାବରେ ନୁହେଁ, ଜଣେ ଗବେଷକ, ପ୍ରାବନ୍ଧିକ ରମ୍ୟରଚନା କ୍ଷେତ୍ରରେ ସେ ସ୍ମରଣୀୟ ପ୍ରତିଭା । ଓଡ଼ିଶା ପ୍ରଶାସନନିକ ସେବାରେ ଥିଲେହେଁ, ସାରସ୍ୱତ ସାଧନାରେ ସେ ନିଜକୁ ନିୟୋଜିତ କରିଛନ୍ତି । ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ୧୯୯୮ ମସିହାରେ ଗଳ୍ପପୁସ୍ତକ 'ଘୁମପାହାଡ଼ର ନଈ' ପାଇଁ ସେ ସମ୍ମାନିତ ।

ଗଳ୍ପ - ଘୁମ୍ ପାହଡ଼ର ନଈ, ବର୍ବର, ମୀମାଂସା,

ପୁସ୍ତକ ଆକାରରେ ବାହାରି ନଥିଲେ ହେଁ ଶତାଧିକ ପ୍ରବନ୍ଧ ର ରଚୟିତା ଭାବେ ସେ ଆଦୃତ ।



# ଆନନ୍ଦ ଚନ୍ଦ୍ର ପହି

## (୧୯୪୬)

ଜଣେ ନାଟ୍ୟକାର, ଗୀତିକାର, ଶିଶୁ ସାହିତ୍ୟିକ ଭାବରେ ସ୍ମରଣୀୟ ପ୍ରତିଭା । ସେ ସର୍ବଭାରତୀୟ ଆକାଶବାଣୀ ପୁରସ୍କାର, ସର୍ବଭାରତୀୟ ବହୁ ଭାଷା ନାଟକ ସମ୍ମାନର ଅଧିକାରୀ ହୋଇଛନ୍ତି । ୧୯୯୮ ମସିହାରେ ନାଟକ 'ପ୍ରତୀକ୍ଷାରେ ପରୀକ୍ଷିତ' ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ନାଟକ - ଦୁଇ ଦିଗନ୍ତ, ରେଖାଚିତ୍ର, ହଜିଯାଇଥିବା ମଣିଷ, ପ୍ରତୀକ୍ଷାରେ ପରୀକ୍ଷିତ, ଆକାଶର ରଂଗ, ଖାଉଟି ଅଦାଲତ ନାଟକ, ଡର, ଖାଲିହାତର ଛବି, ଭାଙ୍ଗି ପଡୁଥିବା ଭୂମି ।

ଗଳ୍ପ - ଧୂଳିଝଡ଼, ଅନେକ ମୁହଁ, ଷ୍ଟାଚ୍ୟୁ, ମୁହଁସଞ୍ଜ, ଅନ୍ୟଅରଣ୍ୟ, ଚରିତ୍ରର ଚିତ୍କାର ।

ଶିଶୁସାହିତ୍ୟ - ପଶୁରାଇଜର କଥା, ପିଲାଙ୍କ ଗପଝୁଡ଼ି, ମାଙ୍କଡ଼ର ଧରମପୁଅ, ଅକଲମକଲ ଟକଲ ଟିଆଁ, ଶିଶୁକଥା କବିତା ।

# ହୃଷୀକେଶ ମଲ୍ଲିକ

## (୧୯୫୪)



କବି ଭାବରେ ଜଣେ ସ୍ମରଣୀୟ ପ୍ରତିଭା ୧୯୮୮ ମସିହାରେ କବିତା ସଂକଳନ 'ଧାନସାଉଁଟା ଝିଅ' ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

କବିତା ସଂକଳନ - ଧାନ ସାଉଁଟାଝିଅ, ଉଜୁଡ଼ା କ୍ଷେତର ଗୀତ, ଘଟ ଆକାଶ, ଧର୍ମପତ୍ନୀ, ଜୀବନ ନାମା,



## ଡଃ କୃଷ୍ଣ ଚରଣ ବେହେରା

### (୧୯୩୨)

ଜଣେ ଲବ୍ଧ ପ୍ରତିଷ୍ଠିତ ପ୍ରାବନ୍ଧିକ, ଗବେଷକ, ସମାଲୋଚକ ଭାବରେ ସ୍ମରଣୀୟ ପ୍ରତିଭା । ସେ ଗବେଷଣା ଧର୍ମୀ ସାହିତ୍ୟ ପତ୍ରିକା 'ଏଷଣା'ର ସଂପାଦକ ଭାବରେ ତଥା ଅଧ୍ୟାପନାରେ ସୁନାମ ଅର୍ଜନ କରିଛନ୍ତି । ସେ ବିଷୁବ ପୁରସ୍କାର, ସେ ଉତ୍କଳ ସାହିତ୍ୟ ସମାଜ ପୁରସ୍କାରରେ ସମ୍ମାନିତ ନାଟକ ଏକାଙ୍କିକା ସମାଲୋଚନା ପ୍ରବନ୍ଧ ପାଇଁ ୧୯୯୮ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ।

**କବିତା** - ଚା' କପରେ ଝଡ଼, ଯୋଜନା ଯଜ୍ଞ, ୫୪ - ଭାନୁବାଇଲେନ୍, ପିପାସାର ପ୍ରାର୍ଥନା, ଲଘୁପଞ୍ଚକ

**ଗଳ୍ପ** - ସୃଷ୍ଟିର ସ୍ୱପ୍ନ, ଐତିରେୟ, ଭଉଁ ଓ ପୋତା, ନାରୀମେଧ, ନାରୀ ଏକ ନଦୀର ନାମ

**ସମାଲୋଚନା** - ପ୍ରଗତିସାହିତ୍ୟ, କଥାସାହିତ୍ୟ, ଓଡ଼ିଆ ଉପନ୍ୟାସ, କେତୋଟି ସାହିତ୍ୟିକ ଅଭିଭାଷଣ, ବୀକ୍ଷା ବିଚିତ୍ରା, ଶ୍ରୀଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ ।

**ସମ୍ପାଦନା** - ମୋଗଲ ତାମ୍‌ସା, କିଶୋରଚନ୍ଦ୍ରା ନନ୍ଦ ଚଂପୂ, ଏ ଯୁଗର ଗଦ୍ୟଚୟନ, ଗୋପାଳକୃଷ୍ଣ ପାଦବଳୀ ପରିକ୍ରମା ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ।



# ଡଃ ମନୋରମା ବିଶ୍ୱାଳ ମାହାପାତ୍ର
## (୧୯୪୮)

ଜଣେ କବି ଭାବରେ ପ୍ରତିଷ୍ଠିତ ପ୍ରତିଭା ତାଙ୍କର କେତେକ ପୁସ୍ତକ ଇଂରାଜୀ, ହିନ୍ଦୀ, ବଂଗଳା, ଆସାମିୟ ଭାଷାରେ ଅନୁଦିତ ହୋଇଛି । ସେ ଝଙ୍କାର ପୁରସ୍କାର, ତଥା ୧୯୯୯ ମସିହାରେ କବିତା 'ଫାଲଗୁନି ତିଥିର ଝିଅ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**କବିତା** - ଥରେ ଡାକ ଦେଲେ, ବ୍ରତତୀ, କିଶଳୟା, ଏକଲା ନଈର ଗୀତ, ଜହ୍ନ ରାତିର ମୁହଁ, ସ୍ମୃତି ଶ୍ରାବଣ ପ୍ରତିବିମ୍ବ, ଶବ୍ଦର ପ୍ରତିମା, ଫାଲଗୁନି ତିଥିର ଝିଅ, ସ୍ୱାତୀଲଗ୍ନା, ବିଶ୍ୱାସର ପଦ୍ମବନ, ଫୁଲଫୁଟା ମୁହୂର୍ତ୍ତ

**ଗୀତିକବିତା** - ସଜଳ ମେଘର ଛାଇ, ମିଥୁନଚମ୍ପୂ, ରାଗ ମହ୍ଲାର

**ପ୍ରବନ୍ଧ** - ଭାବନାର ଭାସ୍କର୍ଯ୍ୟ, ମାସିଂହଙ୍କ କାବ୍ୟ କୀର୍ତ୍ତି, ସ୍ମୃତି ତ କଦାପି ନୁହେଁ ପିଙ୍ଗିବାର

**ଶିଶୁ ସାହିତ୍ୟ** - କେତେକଥା କେତେଗୀତ, ଆଜି କୁନ୍‌ମୁନିର ଜନ୍ମଦିନ, ଟିକି ବଗିଚାର ଟିକି ଚଢ଼େଇ, ଆମେ ସବୁ ଟିକି ପିଲ, ଆରେ ମେଘ ଆ ।

**ଅନୁବାଦ** - The will come back as clouds again

Only a poet can dream

**ହିନ୍ଦୀ** - ସ୍ୱାତୀଲଗ୍ନ, ଶବ୍ଦପ୍ରତିମା, କଭି ଜୀବନ କଭି ମୃତ୍ୟୁ ।



# ନାରୁ ମହାନ୍ତି
## (୧୯୪୩)

ଜଣେ କଥାକାର ଭାବରେ ସ୍ମରଣୀୟ ପ୍ରତିଭା । ୧୯୯୯ ମସିହାରେ 'ପୂର୍ବାପର' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ବାଟପାଉନଥିବା ଜଣେ ପୌଢ଼ର ଦୁର୍ଦ୍ଦଶା, ଶେଷ ଲୋକର ବିବରଣୀ, ମୁଖାବଲୋକନ, ପକ୍ଷୁର ଆତ୍ମକଥା, ଅନ୍ୟଗତି ନାହିଁ, ଶ୍ରୀରଙ୍ଗା ରଙ୍ଗେ ରଙ୍ଗେ,

ଉପନ୍ୟାସ - ପୂର୍ବାପର, ଗୃହଚକ୍ର ଓ ଅଙ୍ଗାରର ଆତ୍ମଲିପି, ଓଭରବ୍ରିଜ ।

# ଡଃ ପ୍ରମୋଦ କୁମାର ତ୍ରିପାଠୀ
## (୧୯୫୬)



ଜଣେ ସୃଜନଶୀଳ ନାଟ୍ୟକାର ଭାବରେ ସ୍ମରଣୀୟ ପ୍ରତିଭା । ୮୦ ରୁ ଉର୍ଦ୍ଧ୍ୱ ନାଟକର ସ୍ରଷ୍ଟା ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ୧୯୯୯ ମସିହାରେ 'ନିଶାନ୍ତ' ନାଟକପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ରଚନାବଳୀ - ଗୋଟିଏ ପକ୍ଷୀରାଜ ଘୋଡ଼ାସମ୍ପର୍କରେ, କାଳିଆ ଉବାଚ, ଗୋଟିଏ ବୁଲା କୁକୁରର ଜନ୍ମ ବୃତ୍ତାନ୍ତ, ଶୁଣ ପରୀକ୍ଷ ଦଣ୍ଡଧାରୀ, କେନ୍ସର, ବେଗମ, ନିଶାନ୍ତ, ଗୁରୁକୁଳବାସ, ପରିଚୟ, ଯେଉଁ ବନସ୍ତରେ ମଣିଷ ନାହିଁ, ସବୁଠୁ ଗରିବ ଲୋକ ।

# ଡଃ ମହେନ୍ଦ୍ର କୁମାର ମିଶ୍ର

## (୧୯୫୯)



ଜଣେ ଗବେଷକ ତଥା ପ୍ରାବନ୍ଧିକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ଆଦିବାସୀ ସାହିତ୍ୟ ଓ ସଂସ୍କୃତିର ଜଣେ ନିଷ୍ଠାପର ଗବେଷକ । ଆଦିବାସୀ ଲୋକସଂସ୍କୃତି ଉପରେ ବହୁ ରାଜ୍ୟସ୍ତରୀୟ ଓ ଜାତୀୟ କର୍ମଶାଳା ଆୟୋଜନ ଓ ବିଭିନ୍ନ ସମୟରେ ପ୍ରତିନିଧିତ୍ୱ କରି ସୁନାମ ଅର୍ଜନ କରିଛନ୍ତି । ୧୯୯୯ ମସିହାରେ ସେ ଓଡ଼ିଶାସାହିତ୍ୟ ଏକାଡ଼େମୀ ଦ୍ୱାରା 'କଳାହାଣ୍ଡିର ଲୋକସଂସ୍କୃତି' ପୁସ୍ତକ ପାଇଁ ସମ୍ମାନିତ ହୋଇଛନ୍ତି ।

ରଚନାବଳୀ - ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି, ଲୋକସଂସ୍କୃତି ପରିକ୍ରମା, ଲୋକସଂସ୍କୃତିବିଦ୍ ନୀଳକଣ୍ଠ, କଳାହାଣ୍ଡିର ଲୋକସଂସ୍କୃତି ।

ଇଂରାଜୀ - Folk songs of Kalahandi, Saora Folk literature.



# ଡଃ ବିଦ୍ୟାଧର ମିଶ୍ର

## (୧୯୧୮)

ଜଣେ ଅର୍ଥନୀତିଜ୍ଞ, ପ୍ରାବନ୍ଧିକ ତଥା ଗବେଷକ ଭାବରେ ପ୍ରତିଷ୍ଠିତ ପ୍ରତିଭା । ୧୯୪୨ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପ୍ରାପ୍ତ, ୧୯୫୫ ରେ କୃଷି ଅର୍ଥନୀତିରେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି ଡିଗ୍ରୀଲାଭ ଉତ୍କଳବିଶ୍ୱ ବିଦ୍ୟାଳୟର ପ୍ରଫେସର ଓ କୁଳପତି ଭାବେ ସୁନାମ ଅର୍ଜନ କରିଛନ୍ତି ।

୧୯୯୯ ମସିହାରେ 'ବିଂଶଶତାବ୍ଦୀର ଓଡ଼ିଶା - ମୋ ଅନୁଭୂତି' ପୁସ୍ତକ ପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ରଚନା ବଳୀ - ବିକଶିତ ପାଶ୍ଚାତ୍ୟ ଜଗତ - ୟୁରୋପ ଓ ଆମେରିକାର କାହାଣୀ, ବିଂଶ ଶତାବ୍ଦୀର ଓଡ଼ିଶା - ମୋ ଅନୁଭୂତି, ନବତୀର୍ଥ

ଜୀବନ ଗଂଗୋତ୍ରୀ - ଗାଁ ମାଟି, ଜାତିନିର୍ମାତାଙ୍କ ଜୀବନ - ଆଲୋଚ୍ୟ - ୧, ୨, ୩ୟ ଭାଗ, Nation Builder - Harekrushna Mohatab.



# ବସନ୍ତ କୁମାରୀ ଦେବୀ
## (୧୯୩୧)

କଥାକାର ଭାବରେ ଜଣେ ସ୍ମରଣୀୟ ପ୍ରତିଭା, ଗଳ୍ପ, ଉପନ୍ୟାସ, ଅନୁବାଦ ପାଇଁ ସେ ସୁନାମ ଅର୍ଜନ କରିଛନ୍ତି ଶିଶୁ ସାହିତ୍ୟ, ପ୍ରବନ୍ଧ ମଧ ରଚନା କରିଛନ୍ତି । ୧୯୯୯ ମସିହାରେ 'ବକୁଳକଥା' ଅନୁବାଦ ସାହିତ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**ଗଳ୍ପ** - ନାସ୍ତିକ ଓ ଅନ୍ୟାନ୍ୟ ଗଳ୍ପ, ରାତ୍ରିର ତପସ୍ୟା, କାହାଣୀ ପେଡ଼ି, ଶତାବ୍ଦୀର ପ୍ରତିଧ୍ୱନି

**ଉପନ୍ୟାସ** - ଆରତି, ସେଇ ସାନଝିଅଟି, ଝଡ଼ରଫୁଲ, କାକ୍‌ଟସରଫୁଲ, ନଦୀର ନାମ ରୂପବତୀ

**କବିତା ସଂକଳନ** - ବାସନ୍ତିକା

**ଅନୁବାଦ** - ଗଣଦେବତା, ପଞ୍ଚଗ୍ରାମ, ବିଚାରକ, ବିଶାଖା, ଦତ୍ତା, ଆରୋଗ୍ୟନିକେତନ, ବ୍ରାହ୍ମଣଝିଅ, ରାମର ସୁମତି, ବୈକୁଣ୍ଠର ଉଇଲ, ଅଭୟାରଣ୍ୟ, ବୁଢ଼ୀଆଣୀ, ବକୁଳକଥା, ହିନ୍ଦୁଧର୍ମର ସାରତତ୍ତ୍ୱ,



# ଶ୍ରୀମତୀ ଜ୍ୟୋତିର୍ମୟୀ ମହାନ୍ତି

## (୧୯୫୪)

ଜଣେ ସାରସ୍ୱତ ସାଧିକା ଭାବରେ ସେ ନିରବିଚ୍ଛିନ୍ନ ଭାବରେ ସାଧନା କରି ଯଶସ୍ୱିନୀ ହୋଇଛନ୍ତି । ବୃହଗଳ୍ପ, କବିତା, ପ୍ରବନ୍ଧ, ଶିଶୁ ସାହିତ୍ୟ ରଚନା କରି ସୁନାମ, ଅର୍ଜନ କରିଛନ୍ତି । ୧୯୯୯ ମସିହାରେ ଶିଶୁ ସାହିତ୍ୟ 'ବିଜ୍ଞାନମୁଣି କହେ କାହାଣୀ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତା ହୋଇଛନ୍ତି ।

**ରଚନାବଳୀ** - ବିଜ୍ଞାନଭିତ୍ତିକ ଉପନ୍ୟାସ - ମୃତ୍ୟୁର ତ୍ରୁଭୁଜ, ନିର୍ଝରିଣୀ, କଲମି ମଣିଷ, ବରଫତଳୁ ଜୀବନ, ପିରାମିଡ୍

**ବିଜ୍ଞାନ ଭିତ୍ତିକ ଶିଶୁଗଳ୍ପ** - ମାଟିମାଆର ପ୍ରଥମ ସନ୍ତାନ, ଆମ ବିଜ୍ଞାନକଥା ଜଳ ଓ ଜୀବନ, ବିଜ୍ଞାନ ମୁଣି କହେ କାହାଣୀ, ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା, ଜଳ, ବାୟୁ, ଶବ୍ଦ, ଆମ ଶରୀରର ସୈନିକ ଭାଇ ।



# ବିନୋଦ କାନୁନ୍‌ଗୋ

## (୧୯୧୨ -୯୦)

ଓଡ଼ିଆ ସାହିତ୍ୟରେ ଜଣେ ପ୍ରତିଷ୍ଠିତ ପ୍ରତିଭା । 'ଜ୍ଞାନମଣ୍ଡଳ' ସଂକଳନ ଓ ସମ୍ପାଦନାରେ ତାଙ୍କର ଖ୍ୟାତି ସୁବିଦିତ, ଜଣେ ସଫଳ ଶିଶୁ ସାହିତ୍ୟିକ ଭାବରେ ସୁନାମ ଅର୍ଜନ କରିଛନ୍ତି । ପୌଢ଼ଶିକ୍ଷା ପାଇଁ ବହୁ ପୁସ୍ତକର ସେ ରଚୟିତା, ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଭାବରେ ପରିଚିତ, ତାଙ୍କର ଆତ୍ମ ଚରିତ 'ଋଣ ପରିଶୋଧ' ଗ୍ରନ୍ଥପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସେ ୧୯୮୪ ମସିହାରେ ସମ୍ମାନିତ ହୋଇଛନ୍ତି । ୧୯୮୦ ମସିହାରେ 'ଛାତକି ପଥର କରି ' ଶିଶୁ ସାହିତ୍ୟ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

**ଶିଶୁସାହିତ୍ୟ** - ଉତ୍କଳମଣି ଗୋପବନ୍ଧୁ, ପିଲାଙ୍କ ଜୟ ପ୍ରକାଶ, ପିଲାଙ୍କ ପଟେଲ, ଆଚାର୍ଯ୍ୟ ହରିହର, ଛାତିକି ପଥର କରି, ଜାତୀୟ କବି ବୀରକିଶୋର

**ସଂପାଦନା** - ଜ୍ଞାନମଣ୍ଡଳ

**ଆତ୍ମଜୀବନୀ** - 'ପାଠ ପଢ଼େ ପଢ଼େ ଅପାଠୁଆ', ଋଣପରିଶୋଧ

## ବିଜୟକୃଷ୍ଣ ମହାନ୍ତି

## (୧୯୨୮)



ଓଡ଼ିଆ ଗଳ୍ପ ସାହିତ୍ୟରେ ଜଣେ ସ୍ମରଣୀୟ ପ୍ରତିଭା । ୧୯୮୦ ମସିହାରେ ସେ 'ଝଙ୍କାର' ପୁରସ୍କାର, ୧୯୯୧ ମସିହାରେ 'ପ୍ରଚକ୍ଷୁ' ଗଳ୍ପ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ତଥାପି, ମ୍ଳାନଜ୍ୟୋସ୍ନା, ସ୍ୱରଭଂଗ, ନିଭୃତ ସଂଳାପ, ପାଗଳା ସାହେବ, ପ୍ରଚକ୍ଷୁ ।

## ଜଗଦୀଶ ମହାନ୍ତି

## (୧୯୫୨)



ଉତ୍ତର ସତୁରୀ କାଳରେ ଜଣେ ପ୍ରୟୋଗ ବାଦୀ କଥା ଶିଳ୍ପୀ । ଓଡ଼ିଆ ସାହିତ୍ୟରେ ସେ ଜଣେ ସ୍ମରଣୀୟ ପ୍ରତିଭା । ୧୯୮୫ ମସିହାରେ ସେ 'ଝଙ୍କାର' ପୁରସ୍କାର, ୧୯୯୦ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ଉପନ୍ୟାସ 'କନିଷ୍ଠ କନିଷ୍ଠ' ପାଇଁ ସେ ସମ୍ମାନିତ ହୋଇଛନ୍ତି ।

ଗଳ୍ପ ସଂକଳନ - ଏକଦା ଅଶ୍ୱାରୋହୀ, ଦକ୍ଷିଣଦୁଆରୀ ଘର, ଈର୍ଷା ଏକ ଋତୁ, ଦ୍ୱିପ୍ରହର ଦେଖି ନଥିବା ଲୋକଟିଏ, ନିଆଁ ଓ ଅନ୍ୟାନ୍ୟ ଗଳ୍ପ, ଆଲବମ୍, ଉପନ୍ୟାସ - କନିଷ୍ଠ କନିଷ୍ଠ, ନିଜନିଜ ପାନିପଥ, ଉତ୍ତରାଧିକାର, ଆଲବମ୍‌ରେ କେତୋଟି ମୁହଁ, ଦୁର୍ଦ୍ଦିନ



# ଜାନକୀ ବଲ୍ଲଭ ପଟ୍ଟନାୟକ

## (୧୯୨୭)

ଜଣେ ରାଜନୀତିଜ୍ଞ, ସାହିତ୍ୟିକ, ସାମ୍ବାଦିକ , ଜନନାୟକ ଭାବରେ ଖ୍ୟାତି ଅର୍ଜନ କରିଛନ୍ତି । ପ୍ରାବନ୍ଧିକ ଭାବରେ ତଥା ଅନୁବାଦକ ହିସାବରେ ସେ ଜଣେ ସଫଳ ସ୍ରଷ୍ଟା । 'ବୈରାଗ୍ୟଶତକ'ର ଅନୁବାଦ ପାଇଁ ୧୯୮୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ହୋଇଛନ୍ତି । ୨୦୦୨ ମସିହାରେ ବଙ୍କିମଚନ୍ଦ୍ରଙ୍କ ଉପନ୍ୟାସର ଅନୁବାଦ ପାଇଁ ସେ କେନ୍ଦ୍ରସାହିତ୍ୟ ଏକାଡ଼େମୀ ତରଫରୁ ସମ୍ବର୍ଦ୍ଧିତ ହୋଇଛନ୍ତି ।

କବିତା ସଂକଳନ - 'ସିନ୍ଧୁ ଉପତ୍ୟକା'

ପ୍ରବନ୍ଧ - 'ସ୍ୱପ୍ନ ଓ ସଂକଳ୍ପ', ନିର୍ବାଚିତ ପ୍ରବନ୍ଧ'

ଜୀବନୀ - ଗୌତମବୁଦ୍ଧ

ଅନୁବାଦ - ବ୍ୟାସଙ୍କ ମହାଭାରତ, ବାଲ୍ମୀକି ରାମାୟଣକୁ ଗଦ୍ୟାନୁବାଦ, ବୈରାଗ୍ୟ ଶତକ, ସ୍ୱାଧୀନତା ସଂଗ୍ରାମର ସ୍ମୃତି,



## ନାରାୟଣ ସାହୁ

### (୧୯୫୫)

ଜଣେ ନାଟ୍ୟକାର ତଥା ସମାଲୋଚକ ଭାବରେ ପରିଚିତ । ସର୍ବଭାରତୀୟ ସ୍ତରରେ ବେତାର ନାଟକ 'ଅନ୍ୟଏକ ବାଲ୍ମୀକ' ପାଇଁ ସେ ସମ୍ମାନିତ ହୋଇଛନ୍ତି । ୧୯୯୧ ମସିହାରେ ସେ ନାଟକ 'ଆଶ୍ରାଖୋଜି ବୁଲୁଥିବା ଈଶ୍ୱର' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି ।

ସମାଲୋଚନା - ପ୍ରାଚୀନ ଭାରତୀୟ ସାହିତ୍ୟ, ଓଡ଼ିଆ ସାହିତ୍ୟର ବିଭିନ୍ନ ଧାରା, ଓଡ଼ିଆ ସାହିତ୍ୟର ସାମାଜିକ ଓ ସାଂସ୍କୃତିକ ଇତିହାସ, ନାଟ୍ୟତତ୍ତ୍ୱ, ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ନାଟକ, ମନୋରଞ୍ଜନଙ୍କ ନାଟ୍ୟ ଦିଗନ୍ତ, ରାମଚନ୍ଦ୍ର ନାଟ୍ୟ ସୃଷ୍ଟି ବଳୟ, ଗୋପାଳ ଛୋଟରାୟ ନାଟ୍ୟମାନସ, ରକ୍ତମନ୍ଦାର ଓ କାଳିଚରଣ, ଜଣେ ରାଜାଥିଲେ ଓ ବିଜୟ ମିଶ୍ର

**ନାଟକ** - ଆଶ୍ରାଖୋଜି ବୁଲୁଥିବା ଈଶ୍ୱର, କାହାଣୀ ସବାଶେଷଲୋକର, ଉପାସନା, ସବୁର୍ଣ୍ଣ ସକାଳ, ପୁନଶ୍ଚ ସଂଗ୍ରାମ, ଅଧାଦେଖାସ୍ୱପ୍ନ, ମୂକ, ଏକାନ୍ତ ଅନୁଭବ ।

## ବିଜୟିନୀ ଦାସ

### (୧୯୪୪)

ଜଣେ କବି, ଗାଳ୍ପିକା, ଔପନ୍ୟାସିକା ଭାବରେ ସ୍ମରଣୀୟ ପ୍ରତିଭା । ୧୯୯୧ ମସିହାରେ ଉପନ୍ୟାସ 'ଦେବଦାସୀ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ବର୍ଦ୍ଧିତା ହୋଇଛନ୍ତି ।

**କବିତା** - ମଧ୍ୟରାତ୍ରିର କବିତା, ସୂର୍ଯ୍ୟୋଦୟ, ଭଙ୍ଗା ଆଇନା,

**ଗଳ୍ପ** - ଶରାହତ, ଝରକା, ଛାଇଆଲୁଅ, ସିଂହାସନ, ଭୋରର ଆକାଶ

**ଉପନ୍ୟାସ** - ଶିଖା ପତଙ୍ଗ, ପଙ୍କ ତିଳକ, ନିଷିଦ୍ଧ କାବ୍ୟ, ଅଜ୍ଞାତ ଅଧ୍ୟାୟ, ସତୀ, ଦେବଦାସୀ, ଡାଏରୀ, ଦେବକୀ



# ପଦ୍ମଜ ପାଳ
## (୧୯୪୭)

କଥାକାର ଭାବରେ ଜଣେ ସ୍ମରଣୀୟ ପ୍ରତିଭା । ସେ ୧୯୯୧ ମସିହାରେ 'ଝଙ୍କାର' ପୁରସ୍କାର, ଓ ଉପନ୍ୟାସ 'ଦୁର୍ଗ ପତନର ବେଳ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାର ସମ୍ବର୍ଦ୍ଧିତ ହୋଇଛନ୍ତି ।

ଗଳ୍ପ ସଂକଳନ - ନିଶୀଥ ଅରଣ୍ୟ, ଅପେକ୍ଷାକର ମୁଁ ଫେରୁଛି, ଇଗଲର ନଖଦନ୍ତ, ସବୁଠୁଁ ସୁନ୍ଦର ପକ୍ଷୀ, ମୁଖା

ଉପନ୍ୟାସ - ଦୁର୍ଗପତନର ବେଳ, ଆମସମୟର ଦୁଃଖ, ପାପ ପରି ନିଜର, ଗଣ୍ଡଭୈରବ



# ଶ୍ରୀନିବାସ ଉଦ୍‌ଗାତା

## (୧୯୩୫)

ଓଡ଼ିଆ ସାହିତ୍ୟରେ ଜଣେ ସ୍ମରଣୀୟ ପ୍ରତିଭା । କବି, ଗାଳ୍ପିକ, ଔପନାସିକ ତଥା ସଫଳ ଅନୁବାଦକ ଭାବରେ ସୁନାମ ଅର୍ଜନ କରିଛନ୍ତି । ୧୯୭୪ ମସିହାରେ ଝଙ୍କାର ପୁରସ୍କାର ଓ ୨୦୦୨ ମସିହାରେ କବିତାପାଇଁ ସାରଳା ସମ୍ମାନରେ ସେ ସମ୍ବର୍ଦ୍ଧିତ ହୋଇଛନ୍ତି । ଉତ୍ତର ପ୍ରଦେଶର ହିନ୍ଦୀ ସାହିତ୍ୟ ସଂସ୍ଥା ପକ୍ଷରୁ 'ଭାରତୀ ଭାରତୀ' ସମ୍ମାନ, ହିନ୍ଦୀ ରଚନାତ୍ମକ ପ୍ରତିଭା ପାଇଁ ରାଷ୍ଟ୍ରପତିଙ୍କ ଦ୍ୱାରା ସମ୍ବର୍ଦ୍ଧିତ ଓ କଲିକାତାରୁ ଆଚାର୍ଯ୍ୟ ବିଦ୍ୟାସାଗର ସମ୍ମାନରେ ସମ୍ମାନିତ ।

**କବିତା ସଂକଳନ** - ପୂରବୀ, ଚାରୋଟି କବିତା, ଆପଣାର ଗୀତ, ପୁନଶ୍ଚ ପୁନଶ୍ଚ, ଏବଂ ପ୍ରତିମା ଅପ୍ରତିମା, ଚୈତ୍ରରଥ, ସମୟ ନଈର ଥିଲା, ଗତମ୍

**ଗଳ୍ପ ସଂକଳନ** - ପୂର୍ଣ୍ଣିମା, ପାର୍ବତୀ, ଦିବ୍ୟ ପୁରୁଷ, କିପରି କହିବି ମୁଁ ଋଣୀ ପତ୍ର ଓ ଅନ୍ୟାନ୍ୟ କାହାଣୀ, ଛାଡ଼ ଅଞ୍ଚଳ ମହାବାହୁ, ସେଇ ସୁବାସିତ ଆତ୍ମାଟି

**ଉପନ୍ୟାସ** - ନୀଳନୟନତଳେ, କାନ୍ତା, ଶେଷରାତ୍ରିର ପ୍ରଥମ ସକାଳ, ଶିଳାର ସପନ, ଅହୀର ଭୈରବ,

ଉପନ୍ୟାସ ଅନୁବାଦ - ଚିତ୍ରଲେଖା, ବିଦ୍ୟା, ଶବଯାତ୍ରା, ଝଡ଼, ଅର୍ଥାନ୍ତର, ସଂସ୍କାର

ଅନୁବାଦ - ହିନ୍ଦୀରୁ ଓଡ଼ିଆରେ ଅନୁବାଦ - କନୁପ୍ରିୟା (ଧର୍ମବୀରଭାରତୀ), ନୀଳହ୍ରଦ ଓ ଝଡ଼ -(କମଲେଶ୍ୱର), ଅର୍ଥାନ୍ତର-(ଚନ୍ଦ୍ରକାନ୍ତା), ସୌଭାଗ୍ୟ ନୂପୁର ମାନସ ହଂସ, (ଅମୃତ ଲାଲନଗର), ସୁରଦାସ ପଦାବଂ'

ଓଡ଼ିଆରୁ ହିନ୍ଦୀ ଅନୁବାଦ - ଫକୀର ମୋହନଙ୍କ ଆତ୍ମଚରିତ, ଗୋପବନ୍ଧୁଙ୍କ କରାକବିତା, ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ ।

ନାଟକ - ରିହର୍ସଲ ଚାଲିଛି

ଅନୁବାଦ - ବାଳଇତିହାସ, କିଛିକାହାଣୀ, ପାଗଳାଘୋଡ଼ା, ଶୋଭାଯାତ୍ରା,



# ଡଃ ପ୍ରସନ୍ନ କୁମାର ପାଟଶାଣୀ
## (୧୯୪୭)

ଜଣେ ଲବ୍ଧପ୍ରତିଷ୍ଠିତ କବି । କବିତାକୁ ନୂତନ ରୂପ ଓ ନୂତନଛନ୍ଦ ଦେବାରେ ସେ ସଫଳ ହୋଇଛନ୍ତି । ୧୯୯୨ ମସିହାରେ 'ଦେଖା ଦେଲେ କହିବି ସେ କଥା' କବିତା ସଂକଳନ ପାଇଁ ସେ ଓଡ଼ିଶା ସାହିତ୍ୟ ଦ୍ୱାରା ସମ୍ମାନିତ ହୋଇଛନ୍ତି ।

**କବିତା ସଂକଳନ** - ଆକାର କବିତା, ଲେନିନ୍ - ୧୯୭୬, ବାଘ ଆଁ ଭିତରେ ପିକ୍‌ନିକ୍ - ୧୯୭୭, ସାତମନ ତେର ଆକାଶ, ବର୍ଷା - ୧୯୮୧, ରକ୍ତପଥ - ୧୯୮୨, ସାପ ଗାତରେ ସକାଳ - ୧୯୮୨, ଅଗ୍ନିଯୁଗ - ୧୯୮୮, ଖୋର୍ଦ୍ଧାର କବିତା ମୁଁ ପଢ଼େ - ୧୯୮୯, ଅମର ନାଥ - ୧୯୯୦, ଦେଖା ଦେଲେ କହିବି ସେ କଥା - ୧୯୯୦, ନୀଳ ନୂପୁର - ୧୯୯୧, କିଛି ଲୁହ କିଛି ଲହୁ, ଅମାବାସ୍ୟା ବସିଛି ଜହ୍ନର ପିଠିରେ - ୧୯୯୩, ଆଖି ଫୁଟିଯାଇଥିବା ସତ୍ୟବାନଟିଏ, ପ୍ରସନ୍ନ ପାଟଶାଣୀଙ୍କ ଏକଶତ ଏକ କବିତା, ଆକାଶର କାଠଗଡାରେ ବନ୍ଦୀ ସୂର୍ଯ୍ୟଙ୍କୁ ଜେରା, ନବ କଳେବର ।

□□□

